# ଅନ୍ତହୀନ ଆକର୍ଷଣ

ଲେଖିକା

ଅମ୍ବିକା ସ୍ୱାଇଁ

ଜ୍ଞାନ ପ୍ରକାଶ
GYAN PRAKASH

ପ୍ରକାଶକ :
ଜ୍ଞାନ ପ୍ରକାଶ ପବ୍ଲିକେସନ୍ସ

# ଅନୁଭବର ଆକର୍ଷଣ

ଲେଖିକା- ଅମ୍ବିକା ସ୍ୱାଇଁ
ଭୁବନେଶ୍ୱର
ମୋ - ୯୭୭୭୫୯୯୬୯୫

**ପ୍ରକାଶକ**
ଜ୍ଞାନ ପ୍ରକାଶ ପବ୍ଲିକେସନ୍ସ
ବାବୁସାହି, ବୌଦ୍ଧ
ପିନ୍- ୭୬୨୦୧୪
ମୋ - ୯୯୩୭୭୭୪୧୭୨

**ପ୍ରକାଶକାଳ:**
ନୂତନ ବର୍ଷ, ୨୦୨୨

**ପ୍ରଚ୍ଛଦ**
ଓମ୍ ପ୍ରକାଶ ସାହୁ

**ଲିପି ସଂଯୋଜନା:**
ଛନ୍ଦାଶ୍ରୀ ପ୍ରିୟଦର୍ଶୀନି
ମୋ: ୬୩୭୦୫୨୩୮୫୫

**ମୁଦ୍ରଣ:**
ସାଥୀ ଅଫ୍‌ସେଟ୍
ଓଡ଼ିଆ ବଜାର, କଟକ

ମୂଲ୍ୟ - ଟ.୧୩୦)
(ମାତ୍ର ଶହେ ତିରିଶ ଟଙ୍କା)

# ANUBHABARA AKARSHANA

**Writer Ambika Swain**
Address:
Bhubaneswar
Mob: 9777599695

**Publisher**
**Gyan Prakash Publications**
Babu Sahi, Boudha
Pin- 762014
Mob: 9937774172

**Publish Time**
New Year, 2022

**Cover Design**
Om Prakash Sahoo

**DTP**
Chhandashree Priyadarsini
Mob: 6370523855

**Printed by:**
Sathi Offset
Odia Bazar, Cuttack

**Price: 130/-**
**(One hundred thirty rupees only)**

# ସମର୍ପଣ

ମୋତେ ନିବିଡ଼ ଭାବରେ ଭଲ ପାଉଥିବା ମୋ
ପ୍ରିୟ ମଣିଷ ଓ ମୋ ଲେଖାକୁ ପଢି ମୋତେ
ଉତ୍ସାହିତ କରୁଥିବା ମୋ ପ୍ରିୟ ପାଠକଙ୍କ
ଆଞ୍ଜୁଳାରେ ଭରିଦେଲି, ପ୍ରଭୁ ଜଗନ୍ନାଥଙ୍କ
ପାଦ ପଦ୍ମରେ ସମର୍ପିତ ହୋଇ ମୋ
ଅନନ୍ୟ କୃତି 'ଅନୁଭବର
ଆକର୍ଷଣ'କୁ....







# ସୂଚୀପତ୍ର

# ସ୍ୱପ୍ନର ଆଞ୍ଜୁଳି

ପ୍ରଭୁ ମୋର ଆଞ୍ଜୁଳିରେ ଭରିଦିଅ
ଅସରନ୍ତି ଶବ୍ଦମାଳା
ସେଥିରୁ ସାଉଁଟି ଶବ୍ଦ ଗୁନ୍ଥିବି ମୁଁ
ଭାବରସ ପୁଷ୍ପ ମାଳା ॥
ସୁଗନ୍ଧିତ ମାଳା ମୋର ମହକିବ
ମନହେବ ପୁଲକିତ
ବିଞ୍ଚିଦେବ ପ୍ରେମମୟ ପ୍ରୀତିରାଜି
ଚର୍ତୁଃଦିଗେ ଅବାରିତ ॥
ଖୁସିର ଲହରୀ ଖେଳାଇ ଶବ୍ଦାର୍ଥ
ମୋହିନେବ ଜନମନ
ସଙ୍ଗୀତର ମୂର୍ଚ୍ଛନାର ତାଳେ ତାଳେ
ନାଚିବେ ଜଗତ ଜନ ॥
ତୁମ ଶ୍ରୀ ଚରଣେ ସମର୍ପିଛି ପ୍ରଭୁ
ଭକ୍ତିର ଆଞ୍ଜୁଳି ଧରି
ତୋଳି ନେବ ଯଦି ସାଦରରେ ତୁମେ
ସ୍ୱପ୍ନ ଯିବ ମୋର ପୂରି ॥

# ଅନୁଭବର ଆକର୍ଷଣ

କାହିଁକି କେଜାଣି
ଏ ମନଟାକୁ ଲଗାମ ଦେଇ ହେଉନି
ସାତ ସମୁଦ୍ର ପାରି ହୋଇ
ଆକାଶ ପାତାଳ ଭୂମିରୁ ଭୂମା ଯାଏ
ଦ୍ରୁତ ଗତିରେ ପହଞ୍ଚି ଯାଉଛି
ସେହି ଏକ ନିର୍ଦ୍ଦିଷ୍ଟ ଇଲାକାରେ
ଅଟକି ଯାଉଛି ଏକ ନିର୍ଦ୍ଦିଷ୍ଟ ବିନ୍ଦୁ ଉପରେ
ଯେଉଁ ବିନ୍ଦୁକୁ ସ୍ପର୍ଶ କରିବା ପାଇଁ
ସାରା ଜୀବନ ଅପେକ୍ଷା କଲେ ବି
ଛୁଇଁ ହେବ ନାହିଁ,
କେବଳ ଅନୁଭବ କରିହେବ ତା'ର ସତ୍ତାକୁ.....!!
ହୃଦୟର ନିଭୃତ କୋଣରେ
ଛଟପଟ ହେଉଛି ଆତ୍ମା
ସେ ଅମୃତ ପରଶର ଅପେକ୍ଷାରେ
ବ୍ୟାକୁଳ ହେଉଛି ମନ
ମିଳିଯାଆନ୍ତା କି ହାତ ପାହାନ୍ତାରେ ଥରେ
ଭୁଲିଯା'ନ୍ତି ଏ ଜୀବନର ସବୁ ଦୁଃଖ ଝଡଝଞ୍ଜା
ସୁଦାମା ପରି ଜାବୁଡି ଧରନ୍ତି, ଖୁବ୍ ସନ୍ତର୍ପଣରେ...
ଛନ୍ଦି ହୋଇଯାଆନ୍ତି ଅନୁଭବର ଆକର୍ଷଣରେ
ତଲ୍ଲୀନ ହୋଇଯାନ୍ତି ବଂଶୀର ମଧୁର ରାଗିଣୀରେ
ସାତ ସ୍ୱରର ଝଙ୍କାର ସେମିତି ଶୁଭୁଥାନ୍ତା
ବାର୍ ବାର୍ ମୋ କର୍ଣ୍ଣରେ....!!!




# ଅମୃତ ପସରା

ଅନୁଭବର ଆକର୍ଷଣରେ
ସଦା ମୁଁ ବୁଡୁବୁଡୁ
ମୋ ଶବ୍ଦର ଚାଙ୍ଗୁଡିରେ
ତୋଳିବାକୁ ମୋ ଛନ୍ଦମୟ ଜୀବନର
କାହାଣୀ ସବୁକୁ.....!!

ଦୁଃଖ, ସୁଖ ଆନନ୍ଦ, ନିରାନନ୍ଦ
ପ୍ରାପ୍ତି ଅପ୍ରାପ୍ତିର
ଆଶା ଆଉ ଆଶା ଶୂନ୍ୟ ଜୀବନର
ଅଧୁରା ସ୍ୱପ୍ନ ସବୁକୁ ସାଉଁଟିବାକୁ
ପ୍ରତିକ୍ଷଣେ ପ୍ରତିମୁହୂର୍ତ୍ତରେ.....!!

ସର୍ବଦା ଏ ମୋହ ମାୟାର
ଅଥଳ ସାଗର ଭିତରୁ ଖୋଜିବୁଲେ
ପ୍ରେମମୟ ଅମୃତମୟ ପରଶର
ଶାନ୍ତିର ପସରା ଟିକୁ....
ହେଲେ ଶାନ୍ତି କ'ଣ
ହାତ ପାହାନ୍ତାରେ ଧରା ଦିଏ ?
ଧରିବା ଆଗରୁ ସେ ଦୌଡ଼ି ପଳାଏ
କାହିଁ କେତେ ଦୂର.....!!

ନିଜ ମନକୁ ଆୟତ୍ତରେ ରଖି
କର୍ମମୟ ଜୀବନର ଧାଁ ଧଉଡ଼ରେ
ଆଗକୁ ପାଦ ବଢ଼ାଏ
ନିଜ ଭିତରେ ଖୋଜୁଥାଏ
ଶାନ୍ତିମୟ ସେ ଅମୃତ ପସରା ଟିକୁ
ଅନୁଭବର ଆକର୍ଷଣରେ ଛନ୍ଦିହୋଇ
ରାତିଦିନ ଆକୁଣ୍ଠ ପାନ କରୁଥାଏ
ସେହି ଅନୁଭବର ବିନ୍ଦୁ ବିନ୍ଦୁ
ଅମୃତ ପରଶକୁ... !!!

# ମୁହୂର୍ତ୍ତଟିଏ

ବିନିଦ୍ର ରଜନୀ ସାଥେ
ତମସାର ଗାଢ଼ ଅନ୍ଧକାର
ସ୍ୱପ୍ନ ଅଙ୍କା ନିଦ୍ରିତ ନୟନରେ
ଏମିତି ଏକ ନିଶୁନ୍ ବେଳାରେ
ସ୍ୱପ୍ନ ପରେ ସ୍ୱପ୍ନ ଦେଖେ
ଘୁରି ବୁଲେ ମନ, ପାଇବାକୁ
ତୁମର ଅମୃତ ପରଶ... !
ଦେଖି ଚାଲେ ମାନସ ପଟ୍ଟରେ
ତୁମର ଅପରୂପ ବେଶ
ଆହାଃ କି ସେ ଅପୂର୍ବ ରୂପ
ସମ୍ମୋହିତ ଆତ୍ମା ହୁଏ ବିମୋହିତ...
ଅଶ୍ରୁ ପ୍ଲାବିତ ନୟନ ହୁଏ ଛଳ ଛଳ
ଆନନ୍ଦାଅଶ୍ରୁ ବହିଯାଏ
ଅମାନିଆ ଲୋତକର
ବିନ୍ଦୁ ବିନ୍ଦୁ ମୁକ୍ତାଝର..... !
ସ୍ୱପ୍ନଭରା ମନରେ ଆଙ୍କିଚାଲେ
ମୁହୂର୍ତ୍ତଟିଏ ହେଉ ପଛେ
ଥରେ ହଜିଯା'ନ୍ତି ତୁମର ସେ ଅମାପ
ବିଶାଳ ବାହୁ ବନ୍ଧନରେ....
ବିନିଦ୍ର ରଜନୀ ସାଥେ
ସେ ଅମୃତମୟ ପରଶକୁ
ଅନୁଭବ କରନ୍ତି ଦିବ୍ୟ ଚେତନାରେ.... ! ! !

# ପ୍ରେମ ଅଶ୍ରୁ

ପ୍ରେମର ବୁନ୍ଦା ବୁନ୍ଦା ଅଶ୍ରୁଢାଳି
ଖୋଜୁଛି ମୁଁ ପ୍ରୀତିର ପସରା
ଦିବସ ରଜନୀ ସାଥେ
ଅନ୍ତହୀନ ପ୍ରେମ ମୋର
କି'ବା ଅଛି ତାହାର ଠିକଣା.... !!

ମରୁ ମରୀଚିକା ସାଥେ
ଖରା ଛାଇ ଲୁଚକାଳି ଖେଳ
ଧରି କି ପାରୁଛି ମୁହିଁ
ସୀମାହୀନ ସାଗରର
ଅଥଳ ଗର୍ଭରେ ବୁଡିଥିବା
ଶାମୁକାରେ ମୋତିର ସନ୍ଧାନ....!!

ତଥାପି ଆଶାର ପ୍ରଦୀପଟିଏ ଜାଳି
ମନ ହୃଦୟକୁ କରି ସମର୍ପିତ
ଚାତକ ସଦୃଶ ବସିଅଛି ଚାହିଁ
'କେତେବେଳେ ତୁମ କାନେ ବାଜିବ
ମୋ ହୃଦୟର ରୁଣୁ ଝୁଣୁ ଶବଦ
ପାରିବ ଜାଣି ମୋ ମନର
ଅନାବିଳ ଆତ୍ମାର ଆବେଗ
ଡେରି ନ କରି ଆସିବ ଧାଇଁ
ପ୍ରେମର ବାରିରେ ଭିଜାଇ ତୁମକୁ
ଆନନ୍ଦ ଅଶ୍ରୁରେ ଭିଜିବି ମୁହିଁ....!!

ତୁମ ଚକ୍ଷୁରେ ମୋ ଚକ୍ଷୁ ମିଶିବ
ପାଇବି ତୁମର କୃପା ସାନିଧ.....
ହେଲେ ଆଜିଯାଏ ବୁଝିଲନି ମୋର ମନ
ମୋ ଶବ୍ଦହୀନ ଭାବନାର ବ୍ୟାକୁଳତାପଣ...
ଯୋଜନ ଯୋଜନ ଦୂରତ୍ୱର ଆକାଶରେ
ସତେ କି ଦେଖୁଛି, ପୂର୍ଣ୍ଣିମାଜହ୍ନ
ହାତ ବଢ଼ାଇଲେ ପାଉନାହିଁ
କିନ୍ତୁ ପାଇବାର ଆଶାରେ
ବସିଛି ତୁମର ଆସିବା ପଥକୁ ଚାହିଁ.....!!!

# ତୁମେ ଆଉ ମୁଁ

ତୁମେ ଆଉ ମୁଁ...
ମୋ ଭିତରେ ତୁମେ
ତୁମ ଭିତରେ ମୁଁ....
ମୋ ଭିତରେ ତୁମେ ନଥିଲେ
ଏ ହାଡ଼ ମାଂସ ରକ୍ତର ସତ୍ତା
ଜାଣି ଥାଆନ୍ତା ବା କିଏ... ?
ନା ତୁମେ ଜାଣି ଥାନ୍ତ ମୁଁ କିଏ
ନା ମୁଁ ଜାଣିଥା'ନ୍ତି ତୁମେ କିଏ .... ?

ତୁମେ ଆଉ ମୁଁ
ମୁଁ ଆଉ ତୁମେ
ମୁଁ ଆଉ କିଏ କି.... ?
ସେହି 'ମୁଁ'ର ଶବ୍ଦ ବ୍ରହ୍ମ ଭିତରେ
କେବଳ ଦୃଶ୍ୟମାନ ତୁମେ...
ପ୍ରତିମୁହୂର୍ତ୍ତରେ
ସେହି ଦୃଶ୍ୟରେ
ତଲ୍ଲୀନ ହେଉଥାଏ ମୁଁ.... ।।

# ପ୍ରେମିକ ପ୍ରବର

ତୁମର ସେ ନିଟୋଳ ନିଷ୍ପ୍ରଭ ଆଖି ଦୁଇଟାରେ
କି ସମ୍ମୋହନ ଶକ୍ତି ଅଛି କେଜାଣି
ଥରେ ଚାହିଁଦେଲେ ସେ ଆଖି ଦୁଇଟିକୁ
ମୁଁ ଭୁଲିଯାଏ ମୋ ନିଜକୁ....
ଭୁଲିଯାଏ ସାରା ଦୁନିଆକୁ....
ଭୁଲିଯାଏ ମୋ’ ଚର୍ତୁଃପାଶ୍ୱର କୋଳାହଳକୁ....
ଭୁଲିଯାଏ ମୋ’ ସ୍ଥିତି ପରିସ୍ଥିତିକୁ....

କେବଳ ସମ୍ମୋହିତ ହେଉଥାଏ
ପ୍ରତିକ୍ଷଣେ ଖୋଜୁଥାଏ, ଦେଖିବାକୁ
ତୁମର ସେ ଶବ୍ଦହୀନ ଚାହାଣୀର
ଅନୁପମ ଅପୂର୍ବ ସୌନ୍ଦର୍ଯ୍ୟକୁ.....
ତୁମେ କିନ୍ତୁ ମୋ’ ମନର ଏ ଆବେଗପଣକୁ
ବୁଝିଛ କି ନା ମୁଁ ଜାଣେନା.....

କାହିଁକି ବା ବୁଝିବ..?
ମୁଁ କ’ଣ ତୁମ୍ଭର ଏକା ନିଜର
ତୁମେ ପରା କୋଟି କୋଟି
ଜନତାଙ୍କ ହୃଦୟର
ପ୍ରେମିକ ପ୍ରବର.....!!!!

# ପ୍ରତ୍ୟାଶା

ଆଖି ବୁଜିଲେ ତୁମେ
ଆଖି ଖୋଲିଲେ ତୁମେ
ମୋ ସାରା ପୃଥିବୀର
ଚର୍ତୁଃପାର୍ଶ୍ୱରେ ତୁମେ
ତୁମେ, ତୁମେ ହିଁ କେବଳ ତୁମେ....

ବିନିଦ୍ର ରଜନୀର
ତନ୍ଦ୍ରାମୟ ରାଗିଣୀରେ ତୁମେ
ଅବଚେତନ ସ୍ୱପ୍ନଭରା
କୁହୁକ ଜାଲରେ ତୁମେ
ମୋ ରଙ୍ଗମୟ ପୃଥିବୀର
କୋଣ ଅନୁକୋଣରେ ତୁମେ...

ମାନବୀୟ ଚିନ୍ତା ଚେତନାରେ ତୁମେ
ଏ ମୋହମାୟା ସଂସାର ବନ୍ଧନର
ଚଲାପଥରେ ତୁମେ....

ମୋ ଲେଖନୀ ତୁଳୀର
ମନ କାନଭାସରେ ତୁମେ
ଆଖି ବୁଜିଲେ ତୁମେ
ଆଖି ଖୋଲିଲେ ତୁମେ
ତୁମେ ଆଉ କିଏ କି ?
ତୁମେ ଆଉ କେହି ନୁହେଁ
ମୋ'ଜୀବନ ଜିଇଁବାର ପ୍ରତ୍ୟାଶା ତୁମେ
ମୋ'ମାନବୀୟ ଆତ୍ମାର ପ୍ରାଣ ତୁମେ... ! !

# ଆବେଗମୟ ଅନୁଭବ

କାହିଁକି କେଜାଣି
ଏ ଲୁହ ବିନ୍ଦୁ ଭିତରେ
ମୁଁ ଅନୁଭବ କରେ
ଅତି ନିବିଡ଼ ଭାବରେ ତୁମକୁ
କାହିଁକି କେଜାଣି
ତୁମ ନିର୍ଜୀବ ନୟନକୁ
ଚାହିଁଦେଲେ ଥରେ
ବହିଯାଏ ଅମାନିଆ ଅଶ୍ରୁ
ମୋର ଦୁଇଧାରେ.....

ତୁମେ ମୋ ଲୁହକୁ ଖୁବ୍ ଭଲ ପାଅନା ?
ମୁଁ ଭଲ ଭାବରେ ଜାଣିଛି
ତୁମେ ଅଛ ମୋ ସାଥିରେ
ପ୍ରତିଟି ମୁହୂର୍ତ୍ତରେ....!!

ଏ ଲୁହ ଦୁଃଖର ନା ସୁଖର
ଭାବନାର ନା ଆବେଗର
କାହିଁକି କେଜାଣି
ଏ ଲୁହ ବିନ୍ଦୁ ଭିତରେ ବି
ମୋ ଅନ୍ତରାତ୍ମା ସ୍ପନ୍ଦିତ ହୁଏ
ଖୁବ୍ ନିବିଡ଼ପଣରେ, ଅନୁଭବ କରେ
ସୁଖର ସେ ଆନନ୍ଦ ସତ୍ତାଟିକୁ....!!

ଏମିତି ସଦା ଥାଅ ମୋ ସାଥିରେ
ମୋ ଅଲକ୍ଷ୍ୟରେ, ମୋ ଅଜାଣତରେ
ମୋ' ଚର୍ତୁଃପାର୍ଶ୍ୱର ଶୁନ୍ୟ ବଳୟରେ
ମୁଁ ଏମିତି ଆଖିବୁଜି, ଅଣ୍ଡାଳିଚାଲେ
ଜୀବନର ଶେଷଯାଏ
ଛୁଇଁବାକୁ ତୁମକୁ
ମୋ ଆତ୍ମାର ନିବିଡ଼ ପଣରେ....

ହେଲେ କ'ଣ ମୁଁ ପାରିବି ଛୁଇଁ
ଏହା କ'ଣ ସତ୍ୟ
ଦ୍ୱାପର ନା ତ୍ରେତୟା.. ?
କେବଳ ଅନୁଭବର ଆକର୍ଷଣରେ
ଅନୁଭବୁଥାଏ ତୁମକୁ
ପ୍ରତି ମୁହୂର୍ତ୍ତରେ,
ମୋ ହୃଦୟର
ବେଳା ଭୂମିରେ..!!!

# ଶବ୍ଦହୀନ ପ୍ରେମ

କାହିଁକି କେଜାଣି ଏ ଶବ୍ଦହୀନ
ପ୍ରେମର ଅଶ୍ରୁବାରିରେ ଭିଜୁଛି ମୁହିଁ
ଏ ଆଖିରେ ମୋର ନିଦନାହିଁ
ରାତିଦିନ ଏକାକାର କରିଛି ତୁମପାଇଁ
ଚିନ୍ତାରେ, ଚେତନାରେ, ବାସ୍ତବରେ
ପ୍ରତିକ୍ଷଣେ ଦେଖୁଛି ଖାଲି ପ୍ରତିଛବି ତୁମରି... !!

ଯୁଆଡେ ଚାହିଁଲେ ଖାଲି ଦିଶିଯାଅ
ତୁମେ ଆଉ ତୁମେ... ତୁମେ ଖାଲି ତୁମେ
ନିଦ୍ରାଡିତ ଅବଚେତନରେ ତୁମେ
ସ୍ୱପ୍ନଭରା ନିଦେ ମୋର ଆସୁଥାଅ
ବାର୍ ବାର୍ ତୁମେ..... !!

ପୁଲକିତ ନୟନରେ ମନଖୋଲି ଦେଖିନିଏ
ଜୀବନର ଦୁଃଖ, ସୁଖ ଭଲ,ମନ୍ଦ
ସବୁକଥା ଆନନ୍ଦରେ କହିଦିଏ
ତୁମେ ଯେମିତି ସେମିତି ନିଶ୍ଚଳ, ନିର୍ବାକ
ମୋ ମନ ଚାହୁଁଥାଏ
ତୁମଠାରୁ ପଦେ ଶୁଣିବା ପାଇଁ
ହେଲେ ତୁମେ ପଦୁଟିଏ କୁହନାହିଁ.... !!

ମୁଁ କିନ୍ତୁ ଜୀବନ ଜିଉଁଛି ତୁମ ଭରସାରେ
ତୁମେ ଅଛ ମୋ' ବିଶ୍ୱାସରେ ମୋ' ଆତ୍ମାରେ
ସବୁବେଳେ ଜାଜ୍ୱଲ୍ୟମାନ ଜ୍ୟୋତି ହୋଇ
ଜଳୁଥାଅ ମୋ' ହୃଦୟରେ
ସେ ଜ୍ୟୋତିରେ ମୁଁ ଦିଶା ଦେଖେ
ଆଗକୁ ପଥ ଚାଲେ କର୍ମ ଆଉ
କର୍ତ୍ତବ୍ୟର ଦ୍ୱାହିରେ.....!!!!

# ଲୁହର ଝରଣା

ପ୍ରେମପ୍ଳାବିତ ଅଶ୍ରୁମୋର
ଝର ଝର ଝରୁଥାଏ
ନୟନରୁ ନିତି
ତୁମେ ବୋଧେ ଦେଖି ଭାରି ଖୁସିହୁଅ
ଦୁଃଖରେ ଜର୍ଜରିତ ଭକ୍ତର ଏ ଅପୂର୍ବ ପ୍ରୀତି.. !!

ସେଥିପାଇଁ ବୋଧହୁଏ ଦୁଃଖଦିଅ
ମୋ' ଲୁହର ଝରଣାରେ ଭିଜିବାକୁ
ଖୁବ୍ ଭଲପାଅ....
ସଦା ଏମିତି ତୁମ ପାଦ
ଧୋଉଥିବି ବାର୍ ବାର୍
ମୋ' ଲୁହର ଝରଣାରେ....
ଅଶ୍ରୁଭିଜା ନୟନରେ ଗାଉଥିବି
ଯେତେ ସବୁ ମୋ' ମନର
ଅବଶୋଷ ଦୁଃଖ ଯାତନାର
ଅଖଣ୍ଡିତ ହୃଦ ଗୀତି ...... !!

ତୁମେ କିନ୍ତୁ ସବୁ ଶୁଣୁଥିବ
ନ ଶୁଣିଲା ପରି ଚୁପ୍‌ଚାପ୍ ରହିଯିବ
କାରଣ ମୁଁ ଭଲଭାବେ ଜାଣିଛି
ତୁମକୁ ଭାରି ଭଲଲାଗେ
ମୋ ଆଖିର ଲୁହରେ ଭିଜେଇବାକୁ
ତୁମ ପାଦ..... !!

ତେଣୁ ଅପେକ୍ଷାରେ ରହିଥାଅ
ଆବେଗରେ ଚାହିଁଥାଅ
ମୋ ମନର ବ୍ୟାକୁଳତାପଣ ଦେଖି
ମୋ ମଥା ଉପରେ ତୁମ ଆଶିଷର
ହାତଟିକୁ ରଖିବ କି ନାହିଁ
ବୋଧହୁଏ ବାର୍‌ବାର୍ ଭାବୁଥାଅ.... !!!

# ବାସ୍ତବ ନା ସ୍ୱପ୍ନ

ମୋ ନିଦ୍ରାତିତ ନୟନରେ
ତୁମେ କାହିଁକି ଆସୁଛ ବାର୍ ବାର୍
ଶୁଆଇ ଦେଉନ ମୋତେ
ଜାଗ୍ରତ ପ୍ରହରୀ ପରି
ରହିଛ ମୋର ସାଥେ....
ମୋ ଆଖିରେ ଖାଲି ଦିଶୁଛି
ତୁମ ଚିତ୍ରପଟ
ଦେହାତୀତ ଶୂନ୍ୟ ଶରୀର ମୋର
ହେଉଛି ଖାଲି ଛଟପଟ....
ପ୍ରେମର ଅମୃତମୟ ଫଲଗୁ ଧାରାରେ
ଭିଜୁଛି ମୁହିଁ....
ବାସ୍ତବ ନା ସ୍ୱପ୍ନ ଭାବି ଭାବି
ରାତି ଯାଉଛି ପାହି.. !!!

# ମୁଁ ତୁମକୁ ଖୁବ୍ ଭଲ ପାଏ

ମୁଁ ତୁମକୁ ଏତେ ଗଭୀର ଭାବରେ
ଭଲପାଏ ବୋଲି ତୁମେ ଜାଣିଛ କି ନା
ତାହା ମୁଁ ଜାଣେନା....
ମୁଁ କିନ୍ତୁ ଭଲ ଭାବରେ ଜାଣିଛି
ତୁମେ ମୋତେ ଖୁବ୍ ଭଲପାଅ
ସେଥିପାଇଁ ତ ମୋତେ ଯନ୍ତ୍ରଣା ଦିଅ
ଦୁଃଖ ଦିଅ କଷ୍ଟ ଦିଅ
ପୁଣି ଆପଣାର କରିନିଅ...।।

ତୁମ ମନ୍ତ୍ର ମୋହିତ ନିର୍ବାକ,ନିଷ୍କଳ
ନୀରବ ଶବ୍ଦହୀନ ଚାହାଣିରେ ସେ
ପଲକହୀନ ନିର୍ନିମେଷ ନୟନରେ
ମୋତେ ଚାହିଁ ରହିଥାଅ
ତୁମ ପରୀକ୍ଷାର ଅଗ୍ନି କୁଣ୍ଡରୁ
ବାହାରି ପାରିବି କି ନାହିଁ
ବାର୍ ବାର୍ ପରଖୁ ଥାଅ...।।

ଶେଷରେ ମୋ ହାତରେ
ହରଣ,ଗୁଣନ,ମିଶାଣ,ଫେଡାଣ
ଯୁକ୍ତ ବିଯୁକ୍ତ ଗଣିତର
ପ୍ରଶ୍ନମାଳା ସହ ପରୀକ୍ଷା ଖାତାଟି
ଧରାଇ ଦେଇ ନିଶ୍ଚିତରେ ରୁହ...।।

ଏ ପରୀକ୍ଷାରୁ ସଫଳ ହେବି କି ନା
ତାହା ମୁଁ ଜାଣେନା
କିନ୍ତୁ ପରୀକ୍ଷା ପରେ ପରୀକ୍ଷା ଦେଇ ଚାଲିବି
ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପାଇଁ
ତୁମ ଦତ୍ତ ମାଟିପିଣ୍ଡ ଜୁଇରେ ଜଳିବା ଯାଏ
ଧୈର୍ଯ୍ୟର ସହ ଅପେକ୍ଷା କରିବି....!!!!

# ମୁଁ ଅଛି ନା...

କିଏ ବିଶ୍ୱାସ କରୁ ବା ନ କରୁ
ସେ ଅଦୃଶ୍ୟ ଶକ୍ତି କୁ...
ମୁଁ କିନ୍ତୁ ବିଶ୍ୱାସକରେ
କର୍ମରେ,ଧର୍ମରେ,ସତ୍ୟରେ,ନ୍ୟାୟରେ
ଜୀବନର ପ୍ରତି ମୁହୂର୍ତ୍ତରେ
ନିଶ୍ଚୟ କେହି ଅଛି ମୋ ଅଦୃଶ୍ୟ ଛାଇରେ..
ଅନୁଭବ କରୁଛି ମୋ' ଅସ୍ତିତ୍ୱରେ
ସେଥିପାଇଁ ତ ଏ ଜୀବନ ମାୟାର
ଦୁଃଖ, ଯନ୍ତ୍ରଣା ବେଦନାକୁ ପିଠିକରି
ଆଡେଇ ଚାଲିଛି.... !!

ହଁ ଏଇତ ଜୀବନ...
ଜୀବନର ମାନେ ଆଉ କ'ଣ କି ?
ଜୀବନର ମାନେ ଯନ୍ତ୍ରଣା, ସଂଘର୍ଷ
ବୁଝାମଣା ସମ୍ଭାବନା....
ସବୁର ସମାହାରରେ ଏ ଜୀବନମଞ୍ଚ !!

ଏ ଜୀବନ ମଞ୍ଚରେ ମୁହଁରେ ରଙ୍ଗ ମାଖି
ହାଲକା ଫୁଲକା ହସ ହସି
ସମସ୍ତେ କରୁଛନ୍ତି ଅଭିନୟ
ମୁଁ ମଧ୍ୟ କରୁଛି ଅଭିନୟ.....
ପିଇଯାଉଛି ଅଦେଖା ଯନ୍ତ୍ରଣାର ଲୁହ... !!

ଦୁଃଖ ପାରାବାରେ ଖୋଜୁଛି
ସୁଖ ସ୍ୱପ୍ନର ମୋହ....
ଏହି ସୁଖ ଦୁଃଖ ଭିତରେ
ବାଟ ଚାଲିବାକୁ ପଡିବ
ବିଶ୍ୱାସ ଆଉ ଭରସାର ସହ....।।

ସତରେ କିଏ ତ ଜଣେ ଅଛି
ମୋ ସାଥିରେ
ଅଦୃଶ୍ୟରେ କହି ଦେଉଛି
ଚୁପି ଚୁପି ମୋ' କାନରେ
ବନ୍ଦ କରିବାକୁ ମୋ' ଅନ୍ତରକୋହ..
ମୁଁ ଅଛି ନା ମୁଁ ଅଛି.....।।।

# ତୁ ଜମା ବ୍ୟସ୍ତ ହଅନା

ପୂଜା ଘରେ ପୂଜା କରୁକରୁ
ବାର୍ ବାର୍ ଦେଖୁଥାଏ
ତୁମର ସେ ଅପରୂପ ନୟନକୁ
ଅନୁଭବ କରୁଥାଏ ପ୍ରତିକ୍ଷଣେ
ତୁମେ ନିଶ୍ଚେ ଦେଖୁଛ
ତୁମ ଅପଲକ ନୟନରେ
ତୁମର ଏହି ଅବୋଧ ସନ୍ତାନକୁ
କହିବାକୁ ଚାହୁଁଚ କିଛି ଶବ୍ଦରେ
କିନ୍ତୁ କହି ପାରୁନା.....
ଖାଲି ମନେ ମନେ ଭାବି ରହୁଛ ସିନା
ମୁଁ କିନ୍ତୁ ବୁଝିପାରୁଛି, ତୁମ ମନର କଥା
ତୁମ ନିରାବତାର ସ୍ୱର
ମୋ କାନରେ ଶୁଭିଯାଉଛି, ଥରକୁ ଥର
ମୁଁ ଅଛି ନା, ମୁଁ ଅଛି, ତୁ ଜମା ବ୍ୟସ୍ତ ହ'ନା... ! ! !

# ପ୍ରତୀକ୍ଷାରେ...

ପୀଡ଼ାଯୁକ୍ତ ମନରେ ମୋ
ଅସରନ୍ତି ଦୁଃଖ
କି କହିବି ଭାବି ଭାବି
ଦିବସ ରଜନୀ ସାଥେ
ରଙ୍ଗ ଆଉ ତୁଳୀ ଧରି ,
ହୃଦୟରେ ଆଙ୍କୁଛି ମୁଁ
କେବଳ ତୁମରି ଚିତ୍ର...
ତୁମେ ତ ଭାରି ଅବୁଝା
ବୁଝନାହିଁ ମୋର ମନ
ମୋର ଧୈର୍ଯ୍ୟ ପଣକୁ
ତୁମ ପରୀକ୍ଷାର
ନିକିତିରେ ତଉଲିଚାଲ !!

ଜୀବନର ଭଙ୍ଗାଗଢା
ଦୁଃଖ ଆଉ ସୁଖ
ସଦା ଖେଳୁଥାନ୍ତି ମୋର ସାଥେ
ଲୁଚକାଳି ଖେଳ
ମହଣ,ମହଣ ଦୁଃଖ ସାଥେ
ସୁଖ ତ ଧରା ଦିଏ ନାହିଁ...

ମହଣେ ସୁଖ ନ ହେଲା ନାହିଁ
ଆଞ୍ଜୁଳାଏ ସୁଖ ମୋର ଲୋଡ଼ା ନାହିଁ
ମାତ୍ର ବିନ୍ଦୁଏ ସୁଖର ପ୍ରତୀକ୍ଷାରେ
ରହିଛି ମୁଁ ଚାତକୀ ପରି ଚାହିଁ !!

# ବ୍ୟାକୁଳିତ ମନ

ପାହାଡ଼ ବୁକୁରେ
ସୂରୁଯ ଲୁଚିଲେଣି
ସଞ୍ଜ ନଇଁ ରାତି ଆସିଲାଣି
ଧୀରେ ଧୀରେ ଉପକ୍ରମ ହେଲାଣି
ଅନ୍ଧାର ରାତ୍ରୀର ନିସ୍ତବ୍ଧତା
ଉଦ୍‌ବେଳିତ ଏ ମନ
ହୃଦୟରେ ଜାଗୁଛି କେତେ ଆଶା
ଅସୁମାରୀ ଉନ୍ମାମତା...
ବଢିଚାଲିଛି ନିସ୍ତବ୍ଧ ରାତ୍ରିର
ପ୍ରହର ପରେ ପ୍ରହର

ତଥାପି ଏ ଅମାନିଆ ମନ
ଅପଲକ ନେତ୍ର
ହେଉନାହିଁ ନିଦ୍ରା ମୁଦ୍ରିତ
ଏ ଅବୁଝା ମନ ମାନୁନି
ଭାବୁଛି କେବଳ ତୁମରି କଥା..
ହେଲେ ତୁମେ କଣ ବୁଝିଛ
ଏ ମନର ଆକୁଳତା,ବ୍ୟାକୁଳତା
ଏ ହୃଦୟର ଅସରନ୍ତି ଆବେଗତା...
ଏ ମନ କେତେ ଚାହେଁ ତୁମକୁ
ପ୍ରତିକ୍ଷଣେ, ପ୍ରତି ମୁହୂର୍ତ୍ତରେ...
ହେଲେ ଦିଅନାହିଁ ତୁମେ ଦେଖା !!

ତଥାପି ଏ ଅସହାୟ ବ୍ୟାକୁଳିତ ମନ
ଏ ଅର୍ଦ୍ଧ ରାତ୍ରରେ କଲମ କାଗଜ ଧରି ବସିଛି
ଲେଖନୀ ମୁନରେ ଲେଖିବ
ସଂସାର ଜୀବନ ଗାଥା
କେତେ ଯେ ଭରିଛି ହୃଦୟ ବ୍ୟଥା

ସବୁରି ମୂଳରେ ମୋ' ମନର କଥା
ତୁମେ ଥରୁଟିଏ ମୋତେ
ଦିଅନ୍ତନି ଦିନେ ଦେଖା... ?!!!

# ତୁମବିନା ସ୍ୱପ୍ନ ଦେଖିବା ମନା

ତୁମେ ମୋ
ହୃଦୟର ସ୍ପନ୍ଦନ
ତୁମେ ମୋ
ନୟନର ଜ୍ୟୋତି
ତୁମେ ମୋର
ରକ୍ତ ଅସ୍ଥି ମଜ୍ଜାରେ
ପ୍ରବାହିତ ହେଉଥିବା
ବଞ୍ଚିବାର ରାହା
ପ୍ରତି ଲୁହ ବିନ୍ଦୁରେ
କାତଟିଏ ପରି ସାହା..!!

ଯେତେ ଝଡ଼ ଝଞ୍ଜା ଆସୁ ପଛେ
ଏ'ପାଖରୁ ସେ ପାଖକୁ
ପାରି ହେବାପାଇଁ
ତୁମେ ହିଁ ତ ବିଶ୍ୱାସ ଆଉ ଭରସା....
ତୁମେ ହିଁ ତ ମୋ' ଜୀବନର
ବାସ୍ତବ ଆଉ କଳ୍ପନା
ତୁମ ବିନା ଜୀବନରେ
ସ୍ୱପ୍ନ ଦେଖିବା ମନା,...!!!

# ଆବେଗ

ତୁମେ ଯେତେ ଦୂରେ ରହିଲେ ବି
ମୋ ଅନ୍ତରାତ୍ମାରେ ମୋ' ଅନୁଭବରରେ
ତୁମକୁ ଅନୁଭବୁଥାଏ
ପ୍ରତିକ୍ଷଣେ, ପ୍ରତିମୁହୂର୍ତ୍ତରେ....

ଯୁଆଡେ ଚାହିଁଲେ ଖାଲି ତୁମେ ଦିଶିଯାଅ
ମୋର ପାଶେ ପାଶେ ଛାଇପରି ରହିଥାଅ !!

ମୁଁ ତୁମକୁ କାହିଁକି ଏତେ ଭଲପାଏ ଯେ..??
ତୁମେ ମୋତେ କ'ଣ ଦିଅ କି.?
ଖାଲି ଦୁଃଖ, ଯନ୍ତ୍ରଣା, କଷ୍ଟ
ସେହି ଦୁଃଖ କଷ୍ଟ ଯନ୍ତ୍ରଣାକୁ
ଲୁହ କରି ପିଉଥାଏ
ସେଥିରେ ବି ଆନନ୍ଦ ପାଉଥାଏ....
ତୁମକୁ ଅନୁଭବ କରୁଥାଏ
ତୁମର ସ୍ପର୍ଶ ଟିକେ ପାଇବାକୁ
ଚାହିଁ ରହିଥାଏ.....!!

କେଉଁ କାଳୁ ଆବେଗରେ
ତୁମକୁ ଚାହିଁ ବସିଛି
ଖାଲି ସ୍ୱପ୍ନରେ ନୁହେଁ
ଭାବନାରେ ନୁହେଁ
ବାସ୍ତବରେ
ସତ ସତିକା ଥରେ ଆସନ୍ତନି
ମୋ ପାଖକୁ.....

ଖୁବ୍ ନିବିଡ଼ ପଣରେ
ମନଭରି ତୁମକୁ ଦେଖନ୍ତି
ଟିକେ ଛୁଅଁନ୍ତି
ପୁଲକିତ ନୟନରେ
ତୁମ ଆଖିରେ ମୋ' ଆଖି ମିଶାଇ
ମୋ ଆନନ୍ଦର ଲୁହକୁ
ତୁମ ପାଦତଳେ ସମର୍ପି ଦିଅନ୍ତି... ! ! !

# ହୃଦୟର ସ୍ପନ୍ଦନ

ସତରେ ମୁଁ ଏବେ ଭାରି ସନ୍ଧିହାନ
ମୋ ମନରେ ଅନେକ ପ୍ରଶ୍ନ
ତୁମେ କଣ ଭାବୁଛ ?
ମୋ କଥା କିଛି ତୁମ କାନରେ
ବାଜୁଛି କି ନାହିଁ..?

ମୁଁ ତ ନିତିଦିନ ସମର୍ପି ଚାଲିଛି
ତୁମ ନିକଟରେ
ମୋର ଆକୁଳପଣ
ବିକଳ ଚାହାଣୀ
ମୋ ମନର ଆବେଗ
ମୋ ଆଖିର ନିଃଶବ୍ଦ ଲୁହ
ସବୁ ତ ଅଜାଡ଼ି ଦେଇଛି
ତୁମ ପାଇଁ ନିସର୍ତ୍ତରେ....!!

ହେଲେ ତୁମେ ତ ନୀରବ
ପାଟି ଖୋଲୁନା
ପଦୁଟିଏ ବି କହୁନା
ସତରେ ତୁମେ ଏମିତି
ଅଣଦେଖା କଲେ ନା
ମୋତେ ଭାରି କଷ୍ଟହୁଏ..!!

ତୁମେ ତ ମୋର ଶକ୍ତି
ତୁମେ ମୋର ବଳ
ତୁମେ ମୋର ସାହସ
ତୁମେ ମୋର ବିଶ୍ୱାସ
ଦିବାନିଶି ସ୍ୱପ୍ନରେ,ଜାଗ୍ରତରେ
ହୃଦୟରେ ଆଙ୍କୁଥାଏ
ତୁମ ରଙ୍ଗ ଅଧରରେ
ଚିମୁଟେ ହସ....!!

ତୁମେ ଯଦି ଏମିତି କରିବ ନା
ତେବେ ମୁଁ ବଞ୍ଚିବି କେମିତି ?
ତୁମ ପାଇଁ ତ ଏ ପ୍ରାଣ, ଏ ଜୀବନ
ତୁମେ ହିଁ ତ ମୋର ନିଃଶ୍ୱାସ ଆଉ ବିଶ୍ୱାସ
ତୁମେ ହିଁ ମୋ ହୃଦୟର ସ୍ପନ୍ଦନ
ତୁମବିନା କ'ଣ ? ବଞ୍ଚିବା ସମ୍ଭବ...!!!

# ସମର୍ପିତ

ସକାଳୁ,ସକାଳୁ ସ୍ନାନ ମାର୍ଜନା
ସରିଲା ପରେ
ଏବଂ ସନ୍ଧ୍ୟାରେ ଦେଉଳର
ଘଣ୍ଟି ଶବ୍ଦ ଆଳତିର ମହକରେ
ଉଛୁଳିତ ହୁଏ ମୋର ମନର ଆବେଗ
ବସିପଡ଼େ ତୁମ ସାମ୍ନାରେ
ଆଖିବୁଜି ଚକାମାଡି
ଭକ୍ତିର ନୈବେଦ୍ୟ ବାଢି... ! !

ଦୀପର ପ୍ରଜ୍ଜ୍ୱଳିତ ଶିଖାରେ
ମହକୁଥାଏ ଧୂପର ବାସ୍ନା
ମୁଣ୍ଡର ଓଢଣା ତଳୁ
ମନର ଉଚ୍ଛ୍ୱାସିତ ଭାବଭରା
ଶବ୍ଦସବୁ ଗୁଣୁ ଗୁଣୁ ରାଗିଣୀରେ ଲୋଟି ପଡନ୍ତି
ହୃଦୟର ସମର୍ପିତ ଭକ୍ତି ଭାବନାରେ
ତୁମରି ଚରଣାବିନ୍ଦରେ.... ! !

ଏହି ପବିତ୍ରମୟ ପରିବେଶରେ
ମୋ ମନରେ ଜମାହୋଇ ରହିଥିବା
ସବୁ ଅଳିଆକୁ ଜଳେଇ ଦିଏ
ଦୀପର ପ୍ରଜ୍ଜ୍ୱଳିତ ଶିଖାରେ.... ! !

ଆଉ ଯେତେସବୁ ଦୁଃଖ, ଯନ୍ତ୍ରଣା ଯାତନା
ନିର୍ବାପିତ ହୁଏ
ନିଃଶେଷ ହୁଏ ସେ ଅଗ୍ନିଧାସରେ... ! !

ମୋ ଆତ୍ମାରେ ଛଟପଟ ହେଉଥିବା
କେତେ ଆକୁଳୁ ବାକୁଳୁ
ଅକୁହାକଥା ସବୁ
ବଖାଣିଚାଲେ ତୁମ ନିକଟରେ... ! !

ହେଲେ ତୁମେ ଶୁଣ କି ନା
ତାହା ମୁଁ ଜାଣେନା
କିନ୍ତୁ ମୋ'ମନକୁ ମିଳେ
ଅପୂର୍ବ ଆନନ୍ଦ ଶାନ୍ତି
ଆଉ ତୃପ୍ତିର ସମବେଦନା ... ! !

# ପରମପିତା

ସତରେ ତୁମ ଲୋଡ଼ିବା ପଣରେ
ମୁଁ ଆକ୍ତାମାକ୍ତା... ।।

ଭାବିଲେ ଆଶ୍ଚର୍ଯ୍ୟ ଲାଗେ
କିପରି ଚିହ୍ନିଲ ତୁମେ
ଏ ଅଲୋଡା ମଣିଷଟି ଭିତରେ ଥିବା
ତା'ଗୁଣ ଗାରିମାର ଗାଥା ।।

କଥାରେ ଅଛି ନା ସୁନା ଚିହ୍ନେ ବଣିଆ
ଗୁଣ ଚିହ୍ନେ ଗୁଣିଆ
ତୁମେ ତ ସେହି ଗୁଣିଆ
ଗୁଣ ଚିହ୍ନିବାର କଳା ତୁମକୁ ଜଣା ।।

ସେଥିପାଇଁ ତ ମୋ ହାତରେ
ଲେଖନୀ ଧରାଇ ମୋତେ କଲ
ଆକ୍ତାମାକ୍ତା....
ଲେଖି ଚାଲିଛି ମୁଁ କବିତା ପରେ କବିତା
ଗପ କାହାଣୀ ପ୍ରବନ୍ଧର ପଟୁତା.. ।।

କେବେ ଆଉ ପଛକୁ ଚାହିଁନି ଫେରି
ବେଦନାସିକ୍ତ ଚୌହଦୀ ଅତିକ୍ରମ କରି
ସ୍ରୋତସ୍ୱିନୀ ପରି ଆଗକୁ ଚାଲିଛି ମାଡି.. ।।

ମନେପଡେ ସେଦିନର କଥା
ଅନ୍ତର ଭାବର ଲୋତକ ଢାଳି
ଟେକିଲି ମୁଁ ମଥା... ।।

ଆଶିଷର ଝରଣାରେ ଭିଜେଇଲ
ଭିଜିଲି ମୁଁ ମନଭରି
ଭିଜୁଥିବି ଏଇମିତି ଜୀବନ ଭରି
ଯେବେଯାଏ ତୁମେ ଢାଳୁ ଥିବ
ତୁମ ଆଶିଷର ବାରି !

କେତେବେଳେ କିଏ ଯଦି ପଚାରିବସେ
ସେ କିଏ ବୋଲି ?
ନିଃସନ୍ଦେହରେ କହିଦେବି
ସେ ଆଉ କେହି ନୁହେଁ
ମୋତେ ଅନ୍ଧାରରୁ ଆଲୋକ ଦେଖାଇଥିବା
ମୋ ହୃଦୟର ପରମପିତା !!

# ସମ୍ପର୍କ ରଜ୍ଜୁ

ଏ ସମ୍ପର୍କଟା ଏମିତି ଏକ
ସୂକ୍ଷ୍ମ ରଜ୍ଜୁରେ ତିଆରି
ଅଡୁଆ ସୂତାପରି
ଗୁଡେଇ ହୋଇ ରହିଛି
ଯେତେ ଫିଟାଇଲେ ବି ଫିଟୁନି
ଗୁଡେଇ ତୁଡେଇ ଅଟକି ଯାଉଛି
ଗୋଟିଏ ଗଣ୍ଠି ପାଖରେ...
ହୁଗୁଳିବାକୁ ଚେଷ୍ଟା କଲେ ବି ହେଉନି
ହୃଦୟ ଆତ୍ମା ବାନ୍ଧିହୋଇ ରହିଛି
ସେହି ନିର୍ଦ୍ଦିଷ୍ଟ ଗଣ୍ଠିରେ,...!!

ଯେଉଁ ବନ୍ଧନକୁ ମାପକାଠିରେ ମାପିହେବନି
କେବଳ ଅନୁଭବ କରିହେବ
ମନର ଆବେଗିକ ପ୍ରଶ୍ନ ଭିତରେ
ସନ୍ତୁଳି ହେଉଛି ବାର୍ ବାର୍...
ନିଜକୁ ପ୍ରଶ୍ନ ପଚାରୁଛି
ଏ ସମ୍ପର୍କର ମାନେ କଣ ?

ନା ଯେଉଁଠି ଅଛି ପାଇବାର ଆଶା
ନା ହରେଇବାର ଇଛା
ଏହି ପବିତ୍ର ଅନାବିଳ ସ୍ୱର୍ଗୀୟ
ସୂକ୍ଷ୍ମ ସମ୍ପର୍କର ମହାମିଳନ
କଣ ମଣିଷର ଇଛାରେ... ?
ଉତ୍ତର କେବଳ ନା....

ଏହା ତ କେବଳ ସେହି ଈଶ୍ୱରୀୟ ଅବଦାନ
ଯାହା କି ସ୍ଥୁଳ ଶରୀରରେ ନୁହେଁ
ଆତ୍ମାର ସୂକ୍ଷ୍ମ ରଜ୍ଜୁରେ ବନ୍ଧା ପଡିଛି
ମନ ହୃଦୟ ଆତ୍ମା ଜୀବନ
ଯାହାକୁ ସ୍ପର୍ଶ କରି ହେବନି
କି'ଏ ଗଣ୍ଠି ଫିଟିବନି ଜୀବନ ତମାମ୍...!!

# ଭଙ୍ଗା ସ୍ୱପ୍ନ

ସ୍ମୃତି ବିଜଡିତ ସ୍ୱପ୍ନାୟିତ ମନମୋର
ଆଶାର କିରଣ ବୁଣି
ଅପେକ୍ଷାରତ ଥିଲା
ସେଦିନର ସେହି ଶୁଭ ମୁହୂର୍ତ୍ତକୁ....
ହଠାତ ଏ କ'ଣ ହେଲା ?
ଆକାଂକ୍ଷିତ ମନେ ମୋର ଭରିଗଲା
ବିଷାଦର ଛାଇ...
ସ୍ୱପ୍ନ ମୋର ଭାଙ୍ଗିଗଲା
ଯେତେବେଳେ କର୍ଣ୍ଣରେ ମୋ' ବାଜିଲା
ବାର୍ ବାର୍ ନାଇଁ ନାଇଁ...
ଅଶ୍ରୁଭିଜା ନୟନରେ ଚାପିଦେଲି
ହୃଦୟର କୋହକୁ....
ଯନ୍ତ୍ରଣାସିକ୍ତ ମନରେ ମାରିଦେଲି
ସବୁ ସ୍ୱପ୍ନର ମୋହକୁ....!!

ଆଶାର କିରଣ ଆଉ ଦିଶିଲା ନାହିଁ
ତମସାର ଘୋର ଅନ୍ଧକାରେ
ଦିଶିଲା କେବଳ ଜୁଲୁଜୁଲିଆ
ପୋକ ଆଲୁଅର ଛାଇ ।

ତଥାପି ସେ ମୁହୂର୍ତ୍ତ ଆଉ ଅଟକିବ ନାହିଁ
ତା'ବାଟରେ ସିଏ ଯିବ ସମୟର ନାବ ଧରି
କାହାପାଇଁ କେଉଁ କାମ ଅଟକି ଯାଏନି
କାହିଁକି ବା ଅଟକିବ
ମୋ' ପରି କଣ ଆଉ କେହିନାହିଁ...!!

# ସ୍ୱପ୍ନର ସୌଧ

ଦେଖିଲା ଦିନଠୁ ତୁମକୁ
ଆଙ୍କିଛି ମୋ' ହୃଦୟରେ ସ୍ୱପ୍ନର ସୌଧ
ଆକାଶରେ, ଜହ୍ନରେ, ତାରାରେ
ପାହାଡ଼ ଜଙ୍ଗଲ ଝରଣାରେ
ମୋ' ମନରେ ହୃଦୟର ଚିତ୍ର ପଟ୍ଟରେ
ମୋ' ଅନ୍ତରାତ୍ମାରେ
କେବଳ ତୁମେ ଆଉ ତୁମେ...
ସବୁଠି ତୁମ ପ୍ରତିଛବି ଦୃଶ୍ୟମାନ ହୁଏ
ଆଗରେ, ପଛରେ, ମୋ ଛାଇରେ, ମୋ ସ୍ୱପ୍ନରେ
ତୁମକୁ ସାଥିକରି ଚାଲିଛି ଏ ଜୀବନ ପଥରେ...
ତୁମ ସାଥେ ମିଶି ଗଢିବିନି
ଖେଳନାର ବାଲିଘର ଟିଏ
ଭାଙ୍ଗିଯିବ ଝଲକାଏ ପବନରେ..
ଏମିତି ଗଢି ଦେବି ବିଶ୍ୱାସର ଘରଟିଏ
ଭାଙ୍ଗିବନି ସେ ବାତ୍ୟା ପବନ ଭୂମିକମ୍ପରେ...
କିନ୍ତୁ ଲୋଡ଼ା ମୋର ତୁମର ସହଚର୍ଯ୍ୟ
ଗଢିବାକୁ ସ୍ୱପ୍ନର ବିରାଟ ସୌଧ
ଯାହା ରହିଥିବ ଚିର କାଳ, ଚିରଦିନ
ଏ ମାଟିରେ ମିଶିବା ଯାଏ...!!!

# ସ୍ୱପ୍ନର ପ୍ରତିବିମ୍ବ

ସୁଖର ସ୍ୱପ୍ନ ସରସୀରେ
ସଦା ହସୁଥିଲା କଇଁ
ଅଚାନକ କାହୁଁ ଆସିଲା ଧାଇଁ
ସେ ଅଣଚାଷ ଝଡ଼-ବତାସ
ଛଡାଇ ନେଲା କଇଁର ମୁହଁରୁ ହସ
ବିଷର୍ଣ୍ଣତା ଭରିଗଲା ହୃଦୟରେ ତା'ର
ସବୁସ୍ୱପ୍ନ ଭାଙ୍ଗିହେଲା ଚୁରମାର...।।

ତା' ବିଶ୍ୱାସର ସୁଖ ସ୍ୱପ୍ନକୁ କିଏ କଲା ଚୋରି
ତା'ଅମୃତର ବୋତଲରେ କିଏ ଦେଲା ବିଷଭରି
ସେ ଅମୃତ ବୋତଲ ଆଜି ଭାଙ୍ଗି ଟୁକୁଡା ଟୁକୁଡ଼ା..
ସେ ଭଙ୍ଗା କାଚଖଣ୍ଡ ଭିତରେ ସେ ଦେଖୁଛି
ତା' ସ୍ୱପ୍ନର ପ୍ରତିବିମ୍ବ....।।

ତା'ସ୍ୱପ୍ନ ସବୁଦାନ୍ତ ନିକିଟେଇ ହସୁଛନ୍ତି
ପରିହାସ କରୁଛନ୍ତି
ଦିବା ସ୍ୱପ୍ନର ମିଛ ଅହଂକାରରେ ମାତିଛନ୍ତି
ତା'ଭଗ୍ନ ହୃଦୟ ଏସବୁ ଯନ୍ତ୍ରଣା ସହିପାରୁନି
ତା'ମନ ଭିତରେ ଅନେକ ପ୍ରଶ୍ନ
ସେ ପ୍ରଶ୍ନର ଉତ୍ତର ସବୁ
ଅଡୁଆ ସୂତାରେ ବୁଢ଼ୀଆଣି ଜାଲପରି
ଛନ୍ଦିହୋଇ ରହିଛି
ଯେତେ ଫିଟାଇବାକୁ ଚେଷ୍ଟା କଲେ ବି
ସେ କ'ଣ ଫିଟୁଛି
ବରଂ ବେଶି ବେଶି ଛନ୍ଦି ହୋଇଯାଉଛି..।।

ଏ ମାୟା ମରୀଚିକା ରହସ୍ୟ ଜାଲ ଭିତରୁ
ମୁକୁଳିବାକୁ ବାଟ କାହିଁ ?
ତା' ନିସଙ୍ଗ ଆତ୍ମା ଛଟପଟ ହେଉଛି
ତା' ହୃଦୟ ଫଟାଇ ଝରି ଆସୁଛି
ଝର ଝର ରୁଧିରକ୍ତା ଲୁହ...

ଆଉ ତା'ର କିଛି ଲୋଡ଼ା ନାହିଁ
ସେ ଦୁଃଖର ଲୁହ ସବୁ ନଈ ହୋଇ ବୋହିଯାଉ
ଅଥଳ ସାଗରର ଅମାପ ଜଳରେ
ଶାମୁକା ଗର୍ଭରେ ମୋତିପରି ଝଟକୁଥାଉ
ସୁଖଦ ସ୍ୱପ୍ନ ସବୁ ମହା ସମୁଦ୍ରର ନୀଳଜଳରେ
ପ୍ରତିବିମ୍ବିତ ହୋଇ ଭାସୁଥାଉ.... ! ! !



# ଦୁଃଖର ଚୌହଦୀ

'ପ୍ରତୀକ୍ଷା' ଦୁଃଖର ଚୌହଦୀ ଭିତରୁ
ସାମାନ୍ୟ ସୁଖର କଳ୍ପନାକରେ
ଶାନ୍ତିର ମଞ୍ଜିବୁଣେ
ହଜିଯାଏ କେଉଁ ଏକ ଅଜଣା ଇଲାକାରେ
ସ୍ୱପ୍ନର ସନ୍ଧାନରେ.....

ତା'ଭିତରେ ଥିବା ଅମୃତମୟ ପରଶକୁ
ସେ ବାଣ୍ଟିଚାଲେ ସମସ୍ତଙ୍କ ଭିତରେ
କିଏ ପ୍ରଶଂସାରେ ଶତମୁଖ ହୁଅନ୍ତି ତ
କିଏ ଈର୍ଷାରେ ଜଳିଯାଆନ୍ତି
ପ୍ରତୀକ୍ଷାର କିଛି ବି ଫରକ ପଡେନା
ତା'କାମ ସେ ନିର୍ବିକାର
ଭାବରେ କରିଚାଲେ
ପୁଣି ବାସ୍ତବତା ତାକୁ ମାଡିବସେ
କୁତୁ କୁତୁ କରି ଜଗାଇଦିଏ
ଜବରଦସ୍ତି ଟାଣିଆଣେ
ଦୁଃଖର ଚୌହଦୀ ଭିତରକୁ
ମାୟା ବନ୍ଧନର ପ୍ରହେଳିକାମୟ
ସମ୍ପର୍କର ଚୌହଦୀ ଭିତରୁ
ଦୁଃଖ କୁହୁଳି କୁହୁଳି
ଅଗ୍ନି ଉଦ୍‌ଗୀରଣ କରେ
ଅଗ୍ନି ଉଦ୍‌ଗୀରଣ ଯେମିତି ତା'ର
ଜନ୍ମଗତ ଧର୍ମ..।।

ହେଲେ ପ୍ରତୀକ୍ଷା ସେ ଅଗ୍ନିରେ
ଜଳିପୋଡି ଯାଏନା
ମୂକପରି ନୀରବ ମନ୍ତ୍ରକୁ ଆପଣାଇ
ଅଗ୍ନିଧାସର କଷ୍ଟ ଯନ୍ତ୍ରଣାରେ
ଛଟପଟ ହୁଏସିନା
ସେ କୁହୁଳା ଅଗ୍ନିରେ ଘିଅଦେଇ
ହୁତୁ ହୁତୁ ଜଳେଇବାକୁ ଚାହେଁନା

ତା' ଆଖିରୁ ଲୁହ ଝରେ
ଭୁଲ ଠିକର ତର୍ଜମା କରେ, ପାରେନି
କାରଣ ତା'ନିଷ୍କପଟ ସରଳ ହୃଦୟ
ଏ ସବୁ ବୁଝେନି
ସାଗରର ଗଭୀରତା ମାପିବା ପାଇଁ,
ତା'ପାଖରେ ସାମର୍ଥ୍ୟ ନାହିଁ
ତା'ନିରବ ହୃଦୟ ଚେଇଁ ଉଠେ
ତାକୁ ଜାଗରିତ କରେ
ପ୍ରଭୁଙ୍କୁ ହାତଯୋଡି ମାଗୁଣି କରେ
ତା' ନୀରିହ ଚାହାଣି ନିରବ କଥା କୁହେ
ହେଲେ ସେ ନିରବ କଥାକୁ ବୁଝିବାକୁ
ଆଉ ଗୋଟିଏ ନୀରିହ, ନିଷ୍କପଟ
ହୃଦୟଟିଏ ଲୋଡ଼ା....

ହେଲେ କିଏ କାହିଁ ବୁଝିବ ଯେ ?

କିନ୍ତୁ 'ପ୍ରତୀକ୍ଷା' ତା'ଆତ୍ମସ୍ୱାଭିମାନକୁ
ଜଳାଞ୍ଜଳି ଦେଇନି, ଭାଙ୍ଗିପଡିନି
ତା' ସୁକର୍ମ ପଥରେ ଆଗେଇ ଚାଲିଛି
ନିଜ ପରିଚୟରେ ବଞ୍ଚିବା ପାଇଁ
ସଙ୍ଘର୍ଷ କରୁଛି...

ସେହି କୁହୁଳା ଅଗ୍ନିଧାସରେ
ଶୀତ ଦିନର କୋମଳ ପରଶକୁ
ଅନୁଭବ କରୁଛି....
କାରଣ 'ପ୍ରତୀକ୍ଷା' ପରା
ସ୍ୱର୍ବ ସହନଶୀଳା ନାରୀଟିଏ...!!!!

# ପ୍ରତୀକ୍ଷା

'ପ୍ରତୀକ୍ଷା' ଆଜି କାହାକୁ ପ୍ରତୀକ୍ଷା କରୁନି
ହାରିଯାଇନି, ଭାଙ୍ଗିପଡ଼ିନି...!!

ବାର୍ ବାର୍ ଅଗ୍ନିରେ ସ୍ନାନ କରୁଛି
ପୁଣି ମନର ଶୀତଳ ସ୍ପର୍ଶରେ ବୁଡ଼ି ଯାଉଛି
ସମୟର ସନ୍ଧିକ୍ଷଣରେ
ଆକ୍ତାମାକ୍ତା ହୋଇ
ଆଗକୁ ପାଦ ପକାଉଛି
ସ୍ୱପ୍ନ ପରେ ସ୍ୱପ୍ନ ଦେଖି ଚାଲିଛି...!!

ଏ ସଂସାରର ମାୟାବନ୍ଧନର
କୁହୁକ ଜାଲରେ
ଛନ୍ଦିହୋଇ ବନ୍ଦୀହୋଇ
ଦୁଃଖ ଯନ୍ତ୍ରଣାର ତାଡ଼ନାକୁ ପିଠିକରି
ଆଞ୍ଜୁଳାଏ ସ୍ୱପ୍ନ ଧରି ଆଗେଇ ଯିବାକୁ
ସ୍ୱପ୍ନ ଦେଖୁଥିଲା 'ପ୍ରତୀକ୍ଷା'

କିନ୍ତୁ କାହା ହୃଦୟର ପାହାଚରେ
ପାଦ ଥାପି ଥାପି ନୁହେଁ....
କାହା ହୃଦୟର ପାହାଚରେ
ପାଦ ଥାପି ଥାପି ଆଗକୁ ଯିବାର
ଅଭିପ୍ସା କେବେ ଥିଲା ନା ଏବେ ଅଛି ..?

କେବଳ ମୋହାବିଷ୍ଟ ସ୍ନେହ-ମମତାର
ମହାସାଗରର ନୀଳରାଶିରେ ଭାସୁଥିଲା
ବିଶ୍ୱାସର ତରଙ୍ଗରେ ବୁଡୁଥିଲା
ଅଣୁଏ ନିଶ୍ୱାସର ସନ୍ଧାନରେ... ! !

ଏବେ କିନ୍ତୁ ନିଶ୍ୱାସ ତା'ର ଅଟକି ଯାଉଛି
ଛାତିରେ ଅସହ୍ୟ ଯନ୍ତ୍ରଣା ହେଉଛି
ହୃଦୟରେ ଜଳୁଛି ଉତ୍ତପ୍ତ ଅଗ୍ନିଶିଖା
ସେହି ଉତ୍ତପ୍ତ ଅଗ୍ନିଶିଖାକୁ ଲିଭାଇବାକୁ
କାହାର ସହାୟତା ଲୋଡ଼ାନାହିଁ
ଚର୍ତୁଃଦିଗରୁ ଭାସି ଆସୁଥିବା
ଦଲକାଏ ସୁଗନ୍ଧିତ ପବନର ପରଶରେ
ଆପେ ଆପେ ଲିଭିଯିବ ସେ ଉତ୍ତପ୍ତ ଅଗ୍ନିଶିଖା ! !

ଏବେ ଆଉ କାହା ହୃଦୟରେ ନୁହେଁ
ନିଜ ବିଶ୍ୱାସର ହୃଦୟରେ ପାଦ ଥାପି ଥାପି
ଆଗକୁ ଯାଇ ଜାଳିବାକୁ ହେବ
ସ୍ୱପ୍ନର ଉଜ୍ଜ୍ୱଳ ଦୀପଶିଖା.... ! ! !

# ଅପରିଚିତ

ହଁ କିଛି କଥା....
ମଣିଷ ଜୀବନର କଥା
ଦୁଃଖ-ସୁଖ ଭଲ-ମନ୍ଦ
ଆନନ୍ଦ ନିରାନନ୍ଦର କଥା
ସବୁକୁ ନେଇ ମଣିଷ ଜୀବନର
ଗାଥା ଆଉ ବ୍ୟଥା....!!

ହଁ ଏୟା କହିବାକୁ ଚାହେଁ
ଜୀବନ ଜିଇଁବାର
ସ୍ୱପ୍ନର ଅନାବିଳ ବନ୍ଧନୀ ଭିତରେ
ବାନ୍ଧି ହୋଇଥାଏ କିଛି ସମ୍ପର୍କ....!!

ଏହାରି ଭିତରେ
ଜୀବନର ଚଲାପଥରେ
ବାଟ ଚାଲୁ ଚାଲୁ
କେତେବେଳେ କାହାସହ ଭେଟହୁଏ
ଜଣା, ଅଜଣା ଚିହ୍ନା ଅଚିହ୍ନା
କେତେବେଳେ ଜଣା ବା ଅଜଣାମାନେ
ଦେଖି ମୁହଁ ଫେରାଇ ନିଅନ୍ତି
କେତେବେଳେ ଚିହ୍ନା ମୁହଁଟିଏ
ମୁରୁକିହସା ଦେଇ, ତା ବାଟରେ ସେ ଚାଲିଯା'ନ୍ତି..!!

ହଁ ଆଉ କେତେବେଳେ ଅଜଣା, ଅଚିହ୍ନା
ଅପରିଚିତ ମୁହଁଟି ବେଶ ଚିହ୍ନା ହୋଇଯାଏ
ହୃଦୟରେ ରହିଯାଏ....!!

ଏମିତି ସଂପର୍କ ବନ୍ଧନୀ ଭିତରେ
ଗଡିଚାଲେ ସମୟ
ଖୁବ୍ ଆପଣାର ବି
ସମୟଚକ୍ରରେ ହୋଇ ଯା'ନ୍ତି ପର ।।

କିନ୍ତୁ ସେହି ଅଚିହ୍ନା ଅପରିଚିତ ମଣିଷଟି
ପାଲଟିଯାଏ, ଅତି ନିଜର, ଅତି ଆପଣାର
ସ୍ନେହ-ମମତା ଭଲ ପାଇବାର ସ୍ୱାର୍ଥହୀନ ସମ୍ପର୍କର.....
ଦୁଃଖରେ, ସୁଖରେ, ଭଲରେ ମନ୍ଦରେ ହୁଏ
ଭାଗୀଦାର...
ସେ ଦିନେ ପାଲଟି ଯାଏ ଦୁନିଆର ସବୁଠୁ
ପ୍ରିୟ ମଣିଷ ତୁମର.... ।।।




# ବନ୍ଧୁତ୍ୱ

ମଣିଷ ଜନ୍ମରୁ ମୃତ୍ୟୁ ଯାଏ
ଅନେକ ଲୋକଙ୍କ ସଂସ୍ପର୍ଶରେ ଆସେ
କେତେ ଲୋକଙ୍କ ସହ ଯୋଡିହୁଏ ସମ୍ପର୍କ
କେତେ ଚିହ୍ନା ପରିଚୟ ସାଙ୍ଗ-ସାଥୀ
ମିଳନ୍ତି ବନ୍ଧୁ ବାନ୍ଧବ...
ସମସ୍ତେ କ'ଣ ହୋଇପାରନ୍ତି ଆତ୍ମୀୟ.. ?

ବେଳେ ବେଳେ ମଣିଷ ଜୀବନରେ
ହଠାତ କେହି ଜଣେ ଆସିଯାଏ
ହୋଇଯାଏ ଅତି ନିଜର, ଅତି ଆପଣାର
ଦୁହେଁ ଦୁହିଁଙ୍କୁ ବୁଝନ୍ତି
ମନରେ, ହୃଦୟରେ, ଆତ୍ମାରେ...
ଦୁଃଖ-ସୁଖ ଭଲ-ମନ୍ଦକୁ ବାଣ୍ଟି ଚାଲନ୍ତି
ପରସ୍ପରରେ,ବିପଦ ଆପଦ
ଅଭାବ ଅସୁବିଧାରେ....
ଉଭୟ ଉଭୟଙ୍କ ପାଇଁ ସାହାଯ୍ୟ ସହାନଭୂତିର
ହାତ ବଢ଼ାନ୍ତି,ବିନା ସ୍ୱାର୍ଥରେ,ବିନା ସର୍ତ୍ତରେ
ସମୟ ଅସମୟରେ.... ! !

ଏମିତି ଏକ ସ୍ୱର୍ଗୀୟ ସମ୍ପର୍କର ଡୋରି
ତୁମ ଆଉ ମୋ ଭିତରେ....
ସ୍ନେହ ସମ୍ପର୍କରେ ବନ୍ଧାପଡିଛି
ଅନ୍ତରଙ୍ଗ ଅନୁଭବର ଶକ୍ତ ଗଣ୍ଠିଟିଏ.. ! !

ଦୁହେଁ ଦୁହିଁଙ୍କ ପାଇଁ ଥିଲେ
ଅଜଣା ଅଚିହ୍ନା ଦିନେ
କେହି ଜାଣି ନ ଥିଲେ କାହାକୁ
ବୁଝାମଣାରେ ହଠାତ ଗଢି ଉଠିଲା
ସମ୍ପର୍କର ସେତୁ ତୁମ ଆଉ ମୋ ଭିତରେ
ପରସ୍ପରର ଭାଷା, ଚିନ୍ତାଧାରା ର ସମାନତା
କରିଦେଲା ଆମକୁ ଖୁବ୍ ଅନ୍ତରଙ୍ଗ
ଖୁବ୍ ଆପଣାର....ଦୁଃଖ, ସୁଖର ଭାଗିଦାର
ଏହି ସଂପର୍କ ବା ବନ୍ଧୁତ୍ୱର ଡୋରି
ନିଶ୍ଚିତ ଭାବେ ଭଗବାନଙ୍କ ଇଚ୍ଛାରେ...

ଏହି ଅନାବିଳ ପବିତ୍ରମୟ
ସଂପର୍କର ସେତୁ କେବେ ନ ତୁଟୁ
ସେହି ବିଶ୍ୱାସଭରା ସ୍ନେହ ମମତାର
ବନ୍ଧୁତ୍ୱର ବନ୍ଧନ ଅତୁଟ ରହୁ
ଶ୍ରୀକୃଷ୍ଣ ସୁଦାମା ପରି
ଚିରକାଳ ଯୁଗ ଯୁଗ, ଜନ୍ମ ଜନ୍ମାନ୍ତର....!!!!

# ଅନବଦ୍ୟ ଅବଦାନ

ନାରୀ ପୁରୁଷ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ
ଦୁହିଁଙ୍କ ବିନା ଏ ସୃଷ୍ଟି ନୁହେଁ ସମ୍ଭବ
କାୟା ଛାୟା ପରି, ଦୁହେଁ ଅଙ୍ଗାଙ୍ଗୀ ଭାବେ ଜଡ଼ିତ
ନିୟତିର ନିର୍ଦ୍ଦେଶରେ ପୁରୁଷ ଧରେ ନାରୀର ହାତ
ଭଗବାନଙ୍କ ସୃଷ୍ଟିର ସଂସାରକୁ ଆଗକୁ ନେବାକୁ
ଉଭୟଙ୍କର ଅନବଦ୍ୟ ଅବଦାନ....।।

ଦୁହେଁ ଦୁହିଁଙ୍କର ସୁଖ ସ୍ୱପ୍ନର ଅନ୍ତରାଳେ
ସଂସାରର ଭବିଷ୍ୟତକୁ ଆଣନ୍ତି ଦୁନିଆକୁ...
ସଂସାର ବୋଝକୁ ମୁଣ୍ଡରେ ମୁଣ୍ଡାଇ,କାନ୍ଧରେ ବୋହି
କେତେ ଝଡ଼ ଝଞ୍ଜା ଦୁଃଖ କଷ୍ଟ ସହି
ଚାଲନ୍ତି ଆଗକୁ ଆଗକୁ.....

ପତି-ପତ୍ନୀ ସାଜି ପବିତ୍ର ବନ୍ଧନେ
ପିତା-ମାତା ପରି ମହାନ ଶବ୍ଦର
ବ୍ୟାପକତା ଭିତରେ ନିଜକୁ ନିମଗ୍ନ କରନ୍ତି
ହଜେଇ ଦିଅନ୍ତି, ମଜେଇ ଦିଅନ୍ତି
ଆକାଶ, ପାତାଳ ପରି ସୀମାହୀନ
ଭୂସ୍ୱର୍ଗର ଅନୁଭବକୁ ସାଉଁଟି ଚାଲନ୍ତି...
ଦୁହେଁ ଦୁହିଁଙ୍କର ଆଶା ବାଡ଼ି ସାଜି
ହାତରେ ହାତ ଛନ୍ଦି ଆଗକୁ ପାଦ ପକାଇଲେ
ଝୁଣ୍ଟିବାର ଭୟ ନଥାଏ....
ଦୁର୍ଗମପଥ ଅତିକ୍ରମ କରିବାକୁ....।।।।



# ମେରିଖୁଣ୍ଟ

ଘରର ମେରିଖୁଣ୍ଟ ବା ମଝିଖୁଣ୍ଟର
ଦମ୍ଭପଣ ଧରି ରଖେ
କାନ୍ଥ, ରୁଅ, ବାଉଁଶ, ନଡା ଛଣ
ସମସ୍ତଙ୍କୁ ସମାନ ଭାବରେ....

କେବେ କରେନାହିଁ ଅନ୍ତର ପାନ୍ତର
ତା' ପାଇଁ ସମସ୍ତେ ସବୁବେଳେ ସମାନ
ମେରିଖୁଣ୍ଟ ଯଦି କୌଣସି ଚାପର ବଶବର୍ତ୍ତୀ
ହୋଇ ଦୁର୍ବଳ ହୋଇଯାଏ
ସାମାନ୍ୟ ପବନରେ ବି ଦୋହଲିଯାଏ
ଅଚାନକ ଭୁଶୁଡି ପଡେ ।

ଘରର ରୁଅ ବାଉଁଶ ନଡ଼ା ଛଣ ଛପର
ସବୁ ହୋଇଯାଏ, ଛିନ୍ନ ଛତର
ନଷ୍ଟ ହୋଇଯାଏ ଘରର ସୁନ୍ଦର ପଣ
ନଷ୍ଟ ହୋଇଯାଏ, ଘରର
ଶାନ୍ତି, ସୁଖ ଐଶ୍ୱର୍ଯ୍ୟ, ବୈଭବ...!!

# ଶକ୍ତି ପୁଞ୍ଜ

ଶରୀରର ହାତର ଛୋଟ ବଡ଼
ପାଞ୍ଚ ଆଙ୍ଗୁଠିର ସମଷ୍ଟି ରେ
ହାତର ସୁନ୍ଦର ପାପୁଲି
ସେହି ସୁଂଦର ପାପୁଲିରେ
ତିଆରି ହୋଇପାରେ ଏକ ଶକ୍ତମୁଠା
ବେଳେବେଳେ ସେହି ଶକ୍ତ ମୁଠାର
ପ୍ରତିହତରେ ମଣିଷ ଶତ୍ରୁକୁ କରେ ଦମନ ।

ସେହି ଶକ୍ତ ହାତମୁଠାରୁ
ଗୋଟିଏ ଆଙ୍ଗୁଠି ଖୋଲି ଗଲେ
ହାତ ମୁଠା ହୁଏ ଦୁର୍ବଳ
ଏହିପରି ଏକରୁ ଅନେକ
ଛୋଟରୁ ବଡ଼ଙ୍କ ସମଷ୍ଟିରେ
ସବୁ କ୍ଷେତ୍ରରେ ଲୋଡ଼ା
ସମସ୍ତଙ୍କର ଅବଦାନ ।।

କିଛି ଗୋଟେ ବଡ଼ କାର୍ଯ୍ୟ
ଜଣଙ୍କ ଦ୍ୱାରା ନୁହେଁ ସମ୍ଭବ
ସମସ୍ତ ଛୋଟ-ବଡ଼ ପାଠୁଆ-ଅପାଠୁଆ
ଜ୍ଞାନୀ-ଗୁଣୀଙ୍କ ସମିଶ୍ରଣର ସହଯୋଗର
ସାହାଯ୍ୟରେ ତିଆରି ହୁଏ
ଏକ ଶକ୍ତିପୁଞ୍ଜ
ଯାହାଦ୍ୱାରା କରି ହୁଏ
ଅସମ୍ଭବ ହିଁ ସମ୍ଭବ...।।

# ଜୀବନର ପରିଭାଷା

ଏ ମନ ସାଗରର ଢେଉପରି
ଭାରି ଅମାନିଆ
କେତେବେଳେ କୂଳ ଲଙ୍ଘିଯାଏ
ଉତ୍ତାଳ ତରଙ୍ଗରେ
ମାନେ ନାହିଁ ବନ୍ଧ-ବାଡ଼
ପହଁଚିବାକୁ ଲକ୍ଷ୍ୟସ୍ଥଳ
ଯେତେ ଆସୁ ବାଧାବିଘ୍ନ
ଝଡ଼ଝଞ୍ଜା ବିପଦ ଆପଦ
ସବୁକୁ ଅତିକ୍ରମ କରି
ଆଗେଇ ଚାଲେ
ଜୀବନ ଯୁଦ୍ଧରେ ସଂଗ୍ରାମ କରେ
ଲଢେଇ କରେ
ଅଜସ୍ର ଜିତିବାର ଆଶା
ଲକ୍ଷ୍ୟସ୍ଥଳରେ ପହଁଚିବାର୍ ନିଶା
ପାରିଲାପଣିଆର ବ୍ୟାକୁଳତା
ଅଦ୍ୟମ ଚେଷ୍ଟା....

ତଥାପି ମନରେ ଅନେକ ଆଶଙ୍କା
କେତେବେଳେ ଜୀବନ ଯୁଦ୍ଧରେ
ହାରିଯାଏ ତ କେତେବେଳେ ଜିତିଯାଏ
ହାରିବା ଜିତିବା ତ ଜୀବନର ଖେଳ
ଏହା ହିଁ ତ ଜୀବନର ମୂଲ୍ୟବୋଧ
ଏହା ହିଁ ତ ଜୀବନର ପରିଭାଷା ।।

# ଏଇତ ଜୀବନ

ଜୀବନର ଚଲାପଥ
ଅଟେ କଣ୍ଟକିତ
ଏହି ପଥ ଅତିକ୍ରମ
କରିବାକୁ ମନର ଦୃଢତା
ଅସୀମ ଧୈର୍ଯ୍ୟ ଲୋଡ଼ିତ
କଣ୍ଟାକୁ ଆଡ଼େଇ ଆଡ଼େଇ
ବାଟ ଚାଲିବାକୁ ହେବ
ଜୀବନର ଦୁର୍ଗମପଥ....

ଭାଙ୍ଗି ପଡ଼ିଲେ ଅଟକି ଯିବା
ପାଇବାନି ବାଟଘାଟ
ମିଳିବନି ଥଳକୂଳ
ସମୟର
ପାବନ୍ଧିରେ ଆସିବ
କେତେ ଝଡ଼ ଝଞ୍ଜା
ବିପଦ ଆପଦ
ସବୁକୁ ସହି ନଦୀର
ଉଚ୍ଛୁଳା ସ୍ରୋତରେ
ଜୀବନର ନୌକାବାହୀ
ପାରିହେବାକୁ ପଡ଼ିବ
ପହଁଚିବାକୁ ନିଜର ଲକ୍ଷ୍ୟସ୍ଥଳ ।।



# ନିଜ ଇଚ୍ଛାରେ ଜୀବନ ଚାଲେନି

ସବୁବେଳେ ନିଜ ଇଚ୍ଛାରେ
ଜୀବନ ଚାଲେନି
ବରଂ ସମୟ ସହ
ସାଲିସ କରିବାକୁ ପଡେ ଜୀବନକୁ...!!
ସଂସାରର ମାୟାଜାଲ ବନ୍ଧନରେ
ପରିସ୍ଥିତିର ଦାସରେ
ମଣିଷ ସାଉଁଟି ଚାଲିଥାଏ
ପୁଞ୍ଜି ପୁଞ୍ଜି ଦୁଃଖ ସୁଖ ହାନି ଲାଭକୁ...!!

ଜୀବନ ପଥରେ ସବୁକୁ ଆପଣାର କରି
ଆଗେଇ ଚାଲେ ଚାଲିବାକୁ ବାଧ୍ୟ ହୁଏ
ଜୀବନ ସଂଗ୍ରାମ ଯୁଦ୍ଧରେ ଲଢେଇ କରେ
ସଂଘର୍ଷ କରେ ବଞ୍ଚିବାକୁ....
ତାହାରି ଭିତରେ ଖୋଜିଚାଲେ
ଶାନ୍ତି ସୁଖର ଆନନ୍ଦ ସଉାଟିକୁ....

ତଥାପି ବେଳେବେଳେ
ସମୁଦ୍ର ପରି ରାଶି ରାଶି
ସୁଖ ଭିତରେ ବି ଦୁଃଖର ଲହଡ଼ି କୂଳ ଲଂଘେ
ଜୀବନର ସୁଖ ଐଶ୍ୱର୍ଯ୍ୟ ବୈଭବକୁ
ଭସାଇ ନିଏ ମହାସାଗରର
ଅଥଳ ଗଭୀରକୁ...
ଯେଉଁଠି ମିଳେନା ଥଳକୂଳ
ନିଜ ଇଚ୍ଛାରେ ଜୀବନ ଜିଇଁବାକୁ
ବରଂ ସମୟ ସହ
ସାଲିସ କରିବାକୁ ପଡେ ଜୀବନକୁ...!!



# ହେ' ସମୟ

ହେ' ସମୟ ତୁମେ କ'ଣ ଭାବୁଛ ?
ମୋତେ ହରେଇ ଦେଇଛ
ଶୁଣି ପାରୁଛି ତୁମ ଅଟ୍ଟହାସ୍ୟର ସ୍ୱର
ତଥାପି ମୁଁ ଅଟକି ଯିବିନି
ଚାଲିବାକୁ ବାକିଅଛି ପଥମୋର ବହୁଦୂର

ତୁମେ ତ ଦିଗହରା ପକ୍ଷୀ
ମୁକ୍ତାକାଶେ ଉଡିଯାଅ ପକ୍ଷ ଝାଡ଼ି
କେତେବେଳେ କେଉଁ ଦିଗେ
ଚାଲିଯାଅ ମାଡି....
ତୁମ ଉପରେ ବା ଭରସା କଣ ?

ହେ' ସମୟ ତୁମେ ସିନା
ଚାଲିଯାଅ ତୁମ ବାଟେ
ପଛକୁ ଚାହଁନା ଫେରି
ହେଲେ ତୁମ ସାଥେ ତାଳଦେଇ
ଉଡି ଉଡି ଯିବାକୁ ମୁଁ କରୁଛି ପ୍ରୟାସ....
ଥକି ପଡିବିନି, ଅଟକି ଯିବିନି
ଚାଲୁଥିବି ତୁମସାଥେ, ସାଥୀ ହେବାପାଇଁ
ପହଂଚିବାକୁ ମୋ ସ୍ୱପ୍ନର ବୟସ ....!!

ଯେ ପର୍ଯ୍ୟନ୍ତ ମୋ ଧମନୀରେ
ବିନ୍ଦୁଏ ରକ୍ତ ହେଉଥିବ ପ୍ରବାହିତ
ଅଣୁଏ ନିଃଶ୍ୱାସ ଚାଲୁଥିବ ଅନବରତ
ଖୋଜୁଥିବି ଜୀବନର ସୂତ୍ର
ଗାଉଥିବି ହୃଦୟର ମନ୍ତ୍ର...!!

ହେ'ସମୟ ତୁମେ
ମୋତେ ଧରା ନ ଦେଲେ ବି
ପାରିବନି ହରାଇ...।

ଅପରାହ୍ନ ହେଲାଣି ଉପନୀତ
ସୂର୍ଯ୍ୟ ଦେବ ମା' କୋଳକୁ ଯିବା ପୂର୍ବରୁ
ଆକାଶରେ ଦୀପ୍ତିମନ୍ତ
ରକ୍ତିମ ଆଭା ହେଲାଣି ବିଚ୍ଛୁରିତ
ସେ କୋମଳସ୍ପର୍ଶରେ ସମସ୍ତେ ବିମୋହିତ...।।

ରାତି ଆସିବାକୁ ଆହୁରି ଘଡ଼ିଏ ବାକି...

ତଥାପି ହେ ସମୟ ତୁମେ ମୋତେ
ଧରା ନ ଦେଲେ ବି ଦେଖ ତୁମକୁ ମୁଁ
କିପରି ଧରିଛି କୌଶଳେ ଜାବୁଡ଼ି ...।।

# ମୁଠାଏ ସ୍ୱପ୍ନ

ମିଠା ମିଠା ମୁଠାଏ ସ୍ୱପ୍ନ
ଧରିନିଏ ହାତ ଧରି
ଅତିକ୍ରମ କରିବାକୁ ଦୁର୍ଗମ ପଥ
ଜୀବନରେ ଆସେ
କେତେ ଦୁଃଖ ସୁଖ
ସୁଖ ସମୟରେ ଉତ୍‌ଫୁଲିତ ହୁଏ ମଣିଷ
ତା'ମନ ହୃଦୟରୁ ମୁକ୍ତା ଝରେ
ଚର୍ତୁଃଦିଗ ଚିକ ଚିକ କରେ
ଉଦିତ ସୂର୍ଯ୍ୟର କିରଣରେ
ଉଦ୍‌ଭାସିତ ହୁଏ ମନ....।।

ପୂର୍ଣ୍ଣିମା ଜହ୍ନର ଶୀତଳତାର ସ୍ପର୍ଶରେ
ସରସୀରେ କଇଁ ଫୁଟିଲା ପରି
ତା'ଆତ୍ମା ସରସୀରେ ଆନନ୍ଦର ପଦ୍ମ ଫୁଟେ
ଏହି ବାସ୍ନାୟିତ ଫୁଲର ମହକରେ
ମହକି ଉଠେ ଜୀବନ....।।

ପୁଣି କେତେବେଳେ ଦୁଃଖ ଦୁର୍ଦ୍ଦିନରେ
ଭାଙ୍ଗିପଡେ ମନ
ତା' ଅନ୍ତରାତ୍ମାରେ ବେଦନାସିକ୍ତ ଜଉ ଜଳେ
ଜୀବନ ଯନ୍ତ୍ରଣାରେ
ଛଟପଟ ହୋଇ ଅଣ୍ଡାଳୁଥାଏ
ସୁଖ ଶାନ୍ତିର ବିନ୍ଦୁଏ ନିର୍ଯ୍ୟାସ
ତା'ମୁଠାଏ ସ୍ୱପ୍ନ ଭରା
ଜୀବନ ଭିତରେ
ପ୍ରତି ନିଶ୍ୱାସରେ ଥାଏ
ଆଗକୁ ଚାଲିବାର ଅଖଣ୍ଡ ବିଶ୍ୱାସ ...।।



# ସ୍ୱପ୍ନର ମଣିଷ

ଯୁଗ ବଦଳୁଛି
ସମୟର ହାତଧରି
ମୁଠେ ସ୍ୱପ୍ନକୁ ସାଥୀ କରି
ଆଶା, ନିରାଶା, ବିଶ୍ୱାସ, ଅବିଶ୍ୱାସ
ହାରଜିତର ଅଙ୍କ କଷି
ମିଶାଣ, ଫେଡାଣ, ହରଣ, ଗୁଣନର
ମୂଲ୍ୟାଙ୍କନରେ ବାଟ ଚାଲୁଚି ମଣିଷ

କେତେ ଦୁଃଖ, ସୁଖ ଘଟଣା, ଦୁର୍ଘଟଣା
ଧସେଇ ପଶେ ଜୀବନ ପରିଧି ଭିତରେ
ସୁଖରେ ଆତ୍ମହରା ହୁଏ ମଣିଷ
ଦୁଃଖରେ ଆକ୍ତାମାକ୍ତା ହୁଏ ଜୀବନ....

ଘାତ ପ୍ରତିଘାତର
ଚୌହଦୀ ଅତିକ୍ରମ କରି
ଜୀବନ ଜିଇଁବା ଶିଖୁଥାଏ
ମୁହୂର୍ତ୍ତ ସୁଖ ମୁହୂର୍ତ୍ତ ଦୁଃଖର
ଖରା ଛାଇର ଲୁଚକାଳି
ଖେଳରେ ଖେଳୁଥାଏ
ଶୃଙ୍ଖଳ ସାଗରରେ ଡୁବୁଥାଏ
ସଙ୍ଘର୍ଷ କରି ଆଗକୁ ପାଦ ବଢ଼ାଏ

ମୁଠାଏ ସ୍ୱପ୍ନକୁ ସାଥି କରି
ନିରାଶାର ଉତ୍ତପ୍ତ ମରୁବାଲିରେ
ଆଶାର ମଞ୍ଜି ବୁଣି ବିଜୟର ସ୍ୱପ୍ନ
ଦେଖୁଥାଏ....
ଏଇ ତ ସେହି ସ୍ୱପ୍ନର ମଣିଷ...।।



# ସ୍ୱପ୍ନ ଶିଢ଼ି

ଜୀବନର ପ୍ରତି ମୁହୂର୍ତ୍ତରେ
ମନୁଷ୍ୟ ଦେଖୁଥାଏ
କେତେ କେତେ ଅସୁମାରୀ ସ୍ୱପ୍ନ
କେତେ ବାସ୍ତବ କେତେ ଅବାସ୍ତବ
ସ୍ୱପ୍ନ ଭିତରେ ଘୁରି ବୁଲୁଥାଏ
କଳ୍ପନାର ସ୍ୱପ୍ନ ଭିତରେ
ବାସ୍ତବତାକୁ ଅଣ୍ଡାଳୁଥାଏ
ହେଲେ ସବୁ ସ୍ୱପ୍ନକୁ କ'ଣ
ସେ ଧରିପାରେ.. ?
ନା ସବୁସ୍ୱପ୍ନ ତାକୁ ଧାରାଦିଏ.... !!

ଅନେକ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଯାଏ
ପୁଣି କେତେବେଳେ ସେ ଅବାସ୍ତବ ସ୍ୱପ୍ନକୁ
ବାସ୍ତବର ରୂପ ଦେବା ପାଇଁ
ଅବାସ୍ତବ ସ୍ୱପ୍ନର ବହଳ ଅନ୍ଧାର ଭିତରେ
ଖୋଜିବୁଲେ ଆଲୋକର ଦିଶା ।

ସେ ଭିତରେ ଥାଏ ତା'ମନର ଦୃଢତା
ଅକ୍ଲାନ୍ତ ଚେଷ୍ଟା, ଅସୀମ ଧୈର୍ଯ୍ୟ
ତାହା ହିଁ ତାକୁ ରାସ୍ତା ଦେଖାଏ
ଦୁଇପାଦ ଆଗକୁ ବଢ଼ିବାକୁ....

ଜୀବନର ରାସ୍ତା ତ ସିଧା ନୁହେଁ
ପହଞ୍ଚିଯିବ ସହଜରେ
ଅଙ୍କା ବଙ୍କା ରାସ୍ତାଦେଇ
କେତେ ବାଧାବିଘ୍ନ ଅତିକ୍ରମ କରି
ଧୈର୍ଯ୍ୟର ସହ ପହଂଚିବାକୁ ପଡ଼ିବ
ଲକ୍ଷ୍ୟସ୍ଥଳର ସ୍ୱପ୍ନଶିଢ଼ିର
ସେ ଶେଷ ପାହାଚରେ....।।

# ଧାପେ ଆଲୁଅ

ଜୀବନ ତ ଅନ୍ଧାର ଆଲୋକର
ଖରା-ଛାଇ ଖେଳ
କେତେବେଳେ ଜୀବନ ଅନ୍ଧାରେ
ଫର୍ଚ୍ଚା ଅଲୋକ ଚିକ୍ ଚିକ୍ କରେ
ହସର ଫୁଆରା ମେଲାଇ
ସ୍ୱପ୍ନ ସବୁକୁ ଜାବୁଡ଼ି ଧରେ.... !!

କେତେବେଳେ
ଜୀବନରେ
ଘୋଟିଆସେ
କିଟିମିଟି ଗାଢ଼ ଅନ୍ଧାର
ସେହି ଗାଢ଼ ଅନ୍ଧାର
ଭିତରେ ଧାପେ ଆଲୁଅ ବି
ଦେଖାଏ ଦିଶା
ଶୂନ୍ୟ ଜୀବନରେ
ଭରିଯାଏ
ଟିକିଏ ଅଶା.. !!

ଆକାଶ ଭର୍ତ୍ତି ଜହ୍ନତାରା ପରି
ମନ ଆକାଶରେ ଜଳି ଉଠେ
ଉଜ୍ଜ୍ୱଳ ଜ୍ୟୋତି
ଆତ୍ମା ସାଗରରେ ତରଙ୍ଗାୟିତ ହୁଏ
ଅସୁମାରୀ ଅନୁଭବ
ସେହି ଅନୁଭବକୁ
ସଯତ୍ନରେ, ସାଉଁଟିଧରେ !!

ଏ ରଙ୍ଗହୀନ
ଜୀବନରେ ଭରିଯାଏ
ଟିକିଏ ତୃପ୍ତି, ଟିକିଏ ଶାନ୍ତି
ଧାପେ ଆଲୋକରେ ଦିଶିଯାଏ
ଆଗକୁ ଚାଲିବାର ରାସ୍ତା
ଶରୀରରେ ପଶିଯାଏ
ବହଳେ ଶକ୍ତି... !!

ଏ ଉଦାସିଆ ମୁହଁରେ
ଭରିଯାଏ, ଟେନାଏ ହସ
ଏଇତ ବଞ୍ଚିବାର
ମୂଳ ଉତ୍ସ....
ଜୀବନକୁ ଉନ୍ମାଦିତ କରେ
ଆବେଗ ଭରା ଜୀବନ ରହସ୍ୟ
ଯେଉଁଥିରେ ଥାଏ
ଅସରନ୍ତି ଶୋଷ ... !!

# ନୀରବ ଯନ୍ତ୍ରଣା

ନୀରବ ଯନ୍ତ୍ରଣାର କଷ୍ଟକୁ
ସହି ହେଉଛି ନା
କହି ହେଉଛି
ଦେଖି ହେଉଛି ନା
ଦେଖେଇ ହେଉଛି
କେବଳ ଯନ୍ତ୍ରଣାରେ
ଦଗ୍ଧୀଭୂତ ହୋଇ
ଜଳି ମରି ବଞ୍ଚିବାକୁ ହେଉଛି
ଏମିତି ଜୀବନ ....।

ତଥାପି ଆଶାର
ରଶ୍ମିରେଖା ଟିଏ
ହୃଦୟରେ
ସ୍ୱପ୍ନର ଗାରଟିଏ
ଟାଣି ଦେଉଛି,
ଜୀବନକୁ ଭୋଗିବାକୁ
ଉତ୍ସାହିତ କରୁଛି...।।

ନୀରବ ଯନ୍ତ୍ରଣା ସାଥେ
ଜୀବନ ଜୀଇଁବାର
ନିଆରା ପଣକୁ
ସଂକୋଳି ଆଣୁଛି...
ଏ ବି ଯନ୍ତ୍ରଣାଭରା
ଜୀବନର
ଏକ ମଧୁର ଅନୁଭବ
ନିଆରା ଆନନ୍ଦ
ହସି କାନ୍ଦି ଜୀବନକୁ
ଭୋଗିବାର ମୋହ...।।



# ଶବ୍ଦ ବୋମା

ମୋ ଶବ୍ଦର
ଚାଙ୍ଗୁଡ଼ିରେ ଭରିଥିଲି
ପ୍ରୀତିପୁଷ୍ପ ଭରା
ବାସ୍ନାମୟ ଅମାପ ସ୍ନେହ
ଆପଣାର ପଣରେ
ଆତ୍ମୀୟତାର ଛଳରେ
ଭଗ୍ନ ହୃଦୟରେ ଅଭିମାନ
ଭରା ସ୍ୱରଟିଏ
ବାଢ଼ିଥିଲି ସେଦିନ
ମୋ' ମାର୍ମିକ ଅଭିବ୍ୟକ୍ତିର
ଦୃଢ଼ପଣରେ ଭରିଥିଲା
ସ୍ନେହ-ମମତା ଭଲପାଇବାର
ଅସରନ୍ତି ମୋହ...
ତୁମେ କିନ୍ତୁ ବୁଝିଲନି
ଖୁବ୍ ସହଜରେ
ଶବ୍ଦ ବୋମାଟିଏ ଫିଙ୍ଗିଦେଲ
ସିଧା ସିଧା କହିଦେଲ
ତୁମେ ମୋର କେହି ନୁହଁ.......!!!

# ହେ' କ୍ରୋଧି ମାନବ

ହେ' କ୍ରୋଧି ମାନବ
ତୁମକୁ କ'ଣ ଜୀବନର
ମୂଲ୍ୟ ଜଣାନାହିଁ
ଏତେ କ୍ରୋଧକର କ'ଣ ପାଇଁ ?
କ୍ରୋଧର ଅଗ୍ନିରେ ନିଜେ ତ
ଅହରହ ଜଳୁଛ
ଅନ୍ୟକୁ ବି ଜଳାଉଛ ।

ଥରେ ତ ବୁଝ
ଜୀବନର ମୂଲ୍ୟବୋଧକୁ
ଶିଖିନିଅ ବଂଚିବାର କଳାକୁ
ଜୀବନକୁ ଗଢିତୋଳ
ସରସ ସୁନ୍ଦର କରି
ଏ ଜୀବନ ତ ଅମୂଲ୍ୟ ସମ୍ପଦ !

ଜୀବନର ଅମୃତମୟ
ନିର୍ଝରିଣୀରୁ ଝରୁଥିବା
ମଧୁମୟ ଭାବରସକୁ
ଟିକିଏ ତ ପାନକର !

ସ୍ନେହ, ପ୍ରେମ ଭଲପାଇବାରେ
କେତେ ଯେ ଆନନ୍ଦ
କେବେ ଅନୁଭବ କରିଛ
ହେ କ୍ରୋଧି ମାନବ... ?

ତୁମେ ଜାଣି ଜାଣି କାହିଁ
ଏପରି ସୁଖକୁ ହାତଛଡା କରୁଛ ?
କ୍ରୋଧର ବଶବର୍ତ୍ତୀ ହୋଇ
ଜୀବନର ଅର୍ଥକୁ ଭୁଲିଯାଉଛ !

ତୁମେ ଏହା ବି ଭୁଲିଯାଉଛ
ଜୀବନଟା ଅଳିକ ମାତ୍ର
ଆଜି ଅଛି କାଲି ନାହିଁ
କେତେବେଳେ ଯେ
ଘୃତାଖିଅର ନିଃଶ୍ୱାସଟା
ଅଟକି ଯିବ କିଏ କହିବ..!!

ହେ' କ୍ରୋଧି ମାନବ
ତୁମେ ଭାବ ନାହିଁ
ସ୍ୱର୍ଗକୁ ନିଶୁଣୀ ବାନ୍ଧିଛ
ନା ଅମର ଲଡୁ ଖାଇଛ ?
ଏ ମାଟି ପିଣ୍ଡ ଶରୀରଟା
କେତେବେଳେ ଯେ
ମାଟିରେ ମିଶିଯିବ
କିଏ କହିବ....!!
ଏ ବିବେକୀ ମାନବ
ଏବେ ବି ସମୟ ଅଛି
ସୁଧୁରି ଯାଅ
ସ୍ନେହ-ପ୍ରେମ ମଧୁର
ସମ୍ପର୍କର ରଜ୍ଜୁରେ ବାନ୍ଧିହୋଇ
ଅନ୍ୟମାନଙ୍କୁ
ଗଭୀର ଭାବରେ ଭଲପାଅ

ଜୀବନ ଆତ୍ମାନନ୍ଦରେ ଭରିଯିବ
ଆତ୍ମା ସହ ଆତ୍ମାର ମିଳନରେ
ମଣିଷ ଭିତରେ ଈଶ୍ୱରଙ୍କୁ ପାଇଯିବ ।।

# ନିରବି ଯାଇଛି

ମୁଁ ଆଜି ନିରବି ଯାଇଛି
ମୁକ୍ତ କୋଠରୀରେ
ଶକ୍ତ ତାଲା ପଡ଼ିଛି
ଝରକା ଫାଙ୍କରେ ଦେଖୁଛି
ଆକାଶରେ ଟିକ୍ ଟିକ୍ କରୁଥିବା
ତାରା ଫୁଲଙ୍କ ମେଳରେ
ଜ୍ୟୋତ୍ସ୍ନା ଭିଜା ଜହ୍ନ
କି ସୁନ୍ଦର ଆନନ୍ଦରେ
ଖିଲି ଖିଲି ହସୁଛି ।।

# ବୁଝାମଣା

ଜୀବନର ମାନେ କେବଳ ଯନ୍ତ୍ରଣା ନୁହେଁ
ଜୀବନର ମାନେ ହିଁ ତ ବୁଝାମଣା
ସେହି ବୁଝାମଣାରେ ଜୀବନ ହୋଇଉଠେ
ସରସ ସୁନ୍ଦର ମଧୁମୟ....

ଦୁନିଆର ପ୍ରତି ମଣିଷ
କିଛି ଯନ୍ତ୍ରଣା, କିଛି ସଂଘର୍ଷ
ହସ-କାନ୍ଦର ସମାହାରରେ
ଚାଲୁଥାନ୍ତି ପଥ
ଦେଖୁଥାନ୍ତି ସ୍ୱପ୍ନ ପରେ ସ୍ୱପ୍ନ
ବିନା ସ୍ୱପ୍ନରେ ଜୀବନ ମୃତପ୍ରାୟ...!!

ସେହି ସ୍ୱପ୍ନମୟ ଜୀବନ ଭିତରେ
ଜଡିତ ଥାଏ
ପାରିବାରିକ ସାମାଜିକ ବନ୍ଧନ
ପ୍ରତିକ୍ଷେତ୍ରରେ, ପ୍ରତି ମୁହୂର୍ତ୍ତରେ
ଜୀବନକୁ ଭେଟିବାକୁ ହୁଏ
ମୁଠା ମୁଠା ଦୁଃଖ, ସୁଖ, ଆବେଗ, ଅନୁରାଗ
କର୍ମ ଭାଗ୍ୟ ଭବିଷ୍ୟତର ଆଶା
ଉଜ୍ଜୀବିତ କରି ଜୀବନ ଜିଇଁବାକୁ ପଡେ
କାରଣ ବୁଝାମଣାର ଅନ୍ତରାଳେ
ଆମକୁ ବୁଝିବାକୁ ହେବ
ଜୀବନର ମାନେ କେବଳ ଯନ୍ତ୍ରଣା ନୁହେଁ
ଜୀବନର ମାନେ ହିଁ ତ ବୁଝାମଣା.....!!



# ମୁଁ ପରା ଘରଣୀ

ତୁମେ ମୋତେ କୁହ
ତୁମେ ଭାରି ଅବୁଝା
ମୁଁ ତୁମକୁ କୁହେ, ତୁମେ ଭାରି ଅବୁଝା
ତୁମେ ଆଉ ମୋ’ ଅବୁଝା ପଣରେ
ମୁଁ ହୁଏ ଆକ୍ତା ମାକ୍ତା...... !!

ମୋ ଅଭିମାନକୁ ତୁମେ ବୁଝ କି ନା
ତାହା ମୁଁ ଜାଣେନା
କିମ୍ୱା ବୁଝି ନ ବୁଝିଲା ପରି
ଅବୁଝା ହୁଅ ତାହା ବି ମୁଁ ଜାଣେନା !!

ତୁମ ଅବୁଝା ପଣରେ
ହୃଦୟରେ ତୋଳି ଥିବା
ଅଭିମାନ ଭରା ଘରଟିଏ
କେତେବେଳେ ଦୋହଲି ଭାଙ୍ଗି ଯାଏ
ତାହା ବି ମୁଁ ଜାଣେନା ।

ସବୁ ରାଗ ଅଭିମାନ
କେତେବେଳେ ନିମିଷକେ
ପାଣି ଫୋଟକା ପରି ମିଳାଇଯାଏ
ତାହା ବି ମୁଁ ଜାଣେନା ।

ଯେମିତି ସେମିତି ଥିଲେ ଆଗପରି
ଯେମିତି କିଛି ହୋଇନି
ପୁଣି ସେହି ସ୍ନେହ-ମମତା ହସ-ଖୁସି
ଭଲପାଇବାର ରଜ୍ଜୁରେ ବାନ୍ଧିହୋଇ
ପଛକଥା କହିବାକୁ ଚାହିଁଲେ ବି କହି ପାରେନା ।

ଆତ୍ମୀୟ ସ୍ନେହ ପ୍ରେମପୂର୍ଣ୍ଣ ସ୍ୱର୍ଗୀୟ
ସଂପର୍କ ବନ୍ଧନରେ ବାନ୍ଧିହୋଇ
ଜୀବନ ନୌକାରେ ପାରିହେବା ପାଇଁ ଚାହେଁ ମୁଁ
ସେଥିପାଇଁ ନିରବ ମନ୍ତ୍ରକୁ ଗଳାର ମାଳି କରି
ସବୁ ସହିଯାଏ କିଛି କୁହେନା ।

କାହିଁକି ନା ମୁଁ ପରା ଘରଣୀ
ଘରକୁ ସଜାଡି ରଖିବାର କଳା
ମୋତେ ହିଁ ଜଣା....।।

# ଶବ୍ଦ ଅଗ୍ନି

ତୁମ କ୍ରୋଧିତ ଶବ୍ଦ ନିଆଁରେ
ତୁମ ବାକ୍ୟ ବାଣର ଧୂଆଁରେ
ଅଣ ନିଶ୍ୱାସୀ ମୁଁ...
ଛାଟି ପିଟି ବାଟ ଖୋଜୁଛି
ସେଥିରୁ ମୁକୁଳିବାକୁ...

ତୁମ କ୍ରୋଧିତ ଶବ୍ଦର ଅଗ୍ନି ଧାସରେ
ଶରୀରରେ ନୁହେଁ
ହୃଦୟରେ ବିରାଟ ଫୋଟକା
ସେ ଫୋଟକା ଫାଟି ଲହୁ ଲୁହାଣ
ସେଥିରେ ଧୈର୍ଯ୍ୟର ମଲମ
ଦେଇ ଚାଲିଛି....

କ୍ଷତ ଶୁଖିବା ପୂର୍ବରୁ
ପୁଣି ତୁମର ଶବ୍ଦ ଫୋଟକା
ମୋତେ କ୍ଷତ ବିକ୍ଷତ କରୁଛି
ସେ କ୍ଷତର ଯନ୍ତ୍ରଣାରେ
ଛାଟିପିଟି ହୋଇ
ଜୀବନକୁ ନିସଙ୍ଗ ମଣୁଛି...

ତଥାପି ଭଲ କିଛି କାମ କରିବାର ମୋହ
ମୋତେ ବାନ୍ଧି ରଖିଛି ତା ପଣତ କାନିରେ...
ଅନେକ ସ୍ୱପ୍ନ ଆଶା ଭିତରେ
ଆଗକୁ ପଡିଉଠି ଚାଲିବାର
ଯେଉଁ ଆନନ୍ଦ
ତାହା କେବେ ବି ନିରବି ଯିବନି
ଏମିତି ଚାଲୁଥିବ ଆଗକୁ ଆଗକୁ ...
ସଂକଳ୍ପିତ ଆତ୍ମ ସ୍ୱାଭିମାନର
ବିଶ୍ୱାସର ନିଃଶ୍ୱାସରେ.... ! ! !

# ଶୂନ୍ୟ ଶାମୁକା

ସ୍ନେହ-ମମତା ଭଲପାଇବା
ସଂପର୍କର ବିଶ୍ୱାସର ଅଥଳ ସାଗରରେ
ଅହରହ ବୁଡୁଥିଲି ମୋତିର ସନ୍ଧାନରେ.......।।

ମୋତି ତ' ମିଳିଲାନି
ଶୂନ୍ୟ ଶାମୁକାର ଧାରରେ କ୍ଷତାକ୍ତ
ହେଲା ଶରୀର....।।
ସେ କ୍ଷତକୁ ଯେତେ ମଲମର ପଟିଦେଇ
ଶୁଖାଇବାକୁ ଚେଷ୍ଟା କରୁଛି
ସେ ଗଭୀର କ୍ଷତ ଶୁଖିବାର ନାଁ ଧରୁନି
ବରଂ ବେଶି ବେଶି ଘାଇଲା ହେଉଛି
ଅନେକ ଯନ୍ତ୍ରଣା ଦେଉଛି
ସେ ଯନ୍ତ୍ରଣାରେ ଛଟପଟ ହେଉଛି ଆତ୍ମା
ହୃଦୟରୁ ଉଠୁଛି କୋହ
ଆଖିରୁ ଝରି ପଡୁଛି
ଝରଝର ବେଦନା ସିକ୍ତ ଲୁହ......।।

ସେ ଲୁହ ବିନ୍ଦୁ ଭିତରେ
ପ୍ରତିଫଳିତ ହେଉଛି
ମୋ ସ୍ନେହ-ମମତା ଭଲପାଇବା
ଆପଣାପଣର ଅସରନ୍ତି ମୋହ....।।



# ଅଦୃଶ୍ୟ ଆଘାତ

ସବୁ ଅଦୃଶ୍ୟ ଆଘାତର ଯନ୍ତ୍ରଣାକୁ
କ'ଣ ଭୁଲି ପାରେ ମଣିଷ
ହଁ ଭୁଲି ପାରେ କିଛି କ୍ଷଣ ପାଇଁ
ବା କିଛି ଦିନ ପାଇଁ.....
କିନ୍ତୁ ସେ ଅଦୃଶ୍ୟ ଯନ୍ତ୍ରଣା ଜଳୁଥାଏ
ହୃଦୟରେ ହୁତୁ ହୁତୁ ହୋଇ....

ସେ କପଟତାର ଯନ୍ତ୍ରଣା ଜର୍ଜରିତ
ଶକ୍ତ ପ୍ରହାରର ଦାଗକୁ
କଣ ଲିଭାଇ ପାରେ ତା'ହୃଦୟ ରୁ.... ?
କର୍ମମୟ ଜୀବନର ସଂସାର ବୋଝର
ଭାରକୁ ବହନ କରି
କର୍ତ୍ତବ୍ୟର ଦ୍ୱାହିରେ ହଜିଯାଏ, ମଜ୍ଜିଯାଏ
କ୍ଷଣିକ ସୁଖରେ ତନ୍ମୟ ହୁଏ ।।

ହେଲେ ପୁଣି କେତେବେଳେ
ଏକ ନିରୋଳା ମୁହୂର୍ତ୍ତରେ
ତା ସୁପ୍ତ ଚେତନା ଜାଗ୍ରତ ହୁଏ
ତା' ସ୍ମୃତିର ଚିତ୍ର ପଟ୍ଟରେ
ତନ୍ନ ତନ୍ନ ହୋଇ ଭାସି ଆସେ
ସେହି ଆଘାତରେ ତିଳ ତିଳ ହୋଇ
ଜଳୁଥିବା ତା' ହୃଦୟର
ଲେଲିହାନ ବହ୍ନିଶିଖା .....।।

ତା'ଆତ୍ମା ଫଟାଇ ନୀରବରେ
ନିଗୁଡ଼ି ପଡୁଥିବା
ବିନ୍ଦୁ ବିନ୍ଦୁ ଲୁହକୁ ସେ ଶୁଖିବାକୁ ଦିଏନି
ସଂକଳ୍ପର ଦ୍ୱାହିରେ ହାରିବାର ନୁହେଁ
ଜିତିବାର ଲକ୍ଷ୍ୟରେ
ତା'ଶରୀର ତନ୍ତ୍ରୀରେ ସାଇତି ରଖେ
ଜୀବନର ଶେଷଯାଏ ଲହୁକରି ।।



# ବୟସ୍କ

ତୁମେ ସବୁବେଳେ କହୁଥାଅ
ତୁମେ ବୟସ୍କ ତୁମେ ବୟସ୍କ
ହଁ ହଁ ମୁଁ ବୟସ୍କ..

କିନ୍ତୁ ବୟସର ନିକିତିରେ କେବେ
ତଉଲିନି ନିଜକୁ
ମାପକାଠିରେ କେବେ ମାପିନି
ସମୟର ସ୍ରୋତକୁ...

ଏ ଶରୀର ବା ବୟସରେ ବନ୍ଧା ନୁହେଁ
ବିଶ୍ୱାସର ପବିତ୍ରମୟ ସମ୍ପର୍କ
ବୟସତ ଅଳିକ ମାତ୍ର
ସମୟ ସାଥିରେ ବାଟ ଚାଲୁଥିବ

ତେଣୁ ବୟସର ଛାପ
ଦେହର ଶିଥିଳତା
ମନକୁ କବ୍‌ଜା କରି ପାରିନି ମୋର
କାରଣ ମୋ ଚିନ୍ତା ଚେତନା ଭିତରେ
ଉଜ୍ଜୀବିତ ଏକ ସତେଜ ପିଲାପଣ....

ମୁଁ ଭଲ ଭାବରେ ଜାଣିଛି
ବୟସ ବଢୁଛି
ବୁଢ଼ା ପା' ମୋତେ ଅକ୍ତିଆର କଲାଣି
ଏହି କଥାଟି ଯେତେବେଳେ
ମୋତେ ଜାବୁଡ଼ି ଧରିବ

କବଳିତ କରିବ
କର୍ମ କରିବାର ପ୍ରବଣତା
ପିଲାପଣର ଉଦ୍ଦାମତା, ଚଞ୍ଚଳତା
କାର୍ଯ୍ୟ କରିବାର ଦକ୍ଷତା
ସବୁ କୁଆଡେ ଉଭେଇ ଯିବ
ସମାଜ ପାଇଁ, ସଂସାର ପାଇଁ
କିଛି କରିବାର ସ୍ୱପ୍ନ, ସ୍ୱପ୍ନରେ ହିଁ ରହିଯିବ

ଶରୀର ମରିବା ପୂର୍ବରୁ ପ୍ରଥମେ
ମନ ମରିଯିବ, ଚାଲିଯିବ ଶ୍ମଶାନକୁ......!!



# ଅବୁଝା ଅଙ୍କ

ଜୀବନ ଏକ ଅବୁଝା ଅଙ୍କ
ଦୁଃଖ ସୁଖ ଆନନ୍ଦର
ଯନ୍ତ୍ରଣା ଓ ସଂଘର୍ଷର
ହସ କାନ୍ଦ ଲୁହ ଆଉ ଲହୁର
କୋହ ଆଉ ମୋହର
ଅନ୍ଧାର, ଆଲୋକର
ଆଶା ଆଉ ନିରାଶାର
ବାସ୍ତବତା ଆଉ ସ୍ୱପ୍ନର
ତ୍ୟାଗ ଆଉ ତିତିକ୍ଷାର
ଯେ ପ୍ରର୍ଯ୍ୟନ୍ତ ବଞ୍ଚିଥିବ ଜୀବନ
ଦୁଃଖ ଭିତରେ ସୁଖକୁ
ନିରାଶା ଭିତରେ ଆଶାକୁ ଖୋଜୁଥିବା
ବାସ୍ତବତା ଆଉ ସ୍ୱପ୍ନକୁ ନେଇ
ଜୀବନ ଜିଇଁବା....!!

ଜୀବନର ଅବୁଝା ଅଙ୍କକୁ
କଷି ଚାଲିଥିବା
ଭାଗଫଳକୁ ଅପେକ୍ଷା ନ କରି
ଭବିଷ୍ୟତର ସ୍ୱପ୍ନ ଦେଖୁଥିବା ...!!

ଅନ୍ୟକୁ ଖୁସି ବାଣ୍ଟିବା
ସଂସାର ନାବରେ ନାଉରୀଟି ସାଜି
କାହା ପାଇଁ କୁଟା ଖିଅର
ଆଶ୍ରାଟିଏ ବନିଯିବା ।।
ଏଇତ ଜୀବନ......!!!!



# ଅସଜଡ଼ା ସମୟ

ସଜଡା ସମୟଟି ଆଜି
ଅସଜଡ଼ା ଦିଗହରା
ଭରାକ୍ରାନ୍ତ ଏ ପରିବେଶ
ଭିଜା ଭିଜା ବତୁରା ପୁଲକିତ ମନ
ଆଜି କ୍ଲାନ୍ତ ଶ୍ଳାନ୍ତ
ବିବ୍ରତ ଏ ମନ ମସ୍ତିଷ୍କ
ଚିନ୍ତାର ଚୌହଦୀ ଭିତରେ
ଆକ୍ତା ମାକ୍ତା ଏ ଜୀବନ... !!

ଅନ୍ତର ଯନ୍ତ୍ରଣା ଦହନରେ
ଜଳୁଛି ଆଶାର ଭବିଷ୍ୟତ
ସ୍ୱପ୍ନ ସବୁ ଭାଙ୍ଗି ଖଣ୍ଡ ବିଖଣ୍ଡିତ
ଫୁରସତ କାହିଁ ଖୋଲାମନେ
ଗାଇବାକୁ ଜୀବନ ସଙ୍ଗୀତ.... !!

ବେଡି ପକା ପାଦରୁ ସିନା
ଖୋଲି ଯାଇଛି ଆଜି ଝଞ୍ଜିର
ହେଲେ ଆଗକୁ ପାଦ ପକାଇବାକୁ
ଶକ୍ତି ଆଉ ସାମର୍ଥ୍ୟ ଦରକାର... !!

ହଁ ସେହି ବିଶ୍ୱାସ
ଉଦ୍ୟମ ଦୃଢ ମନୋବଳ
ସାହସ ଧୈର୍ଯ୍ୟ ଧିରେ ଧୀରେ
ଟାଣି ନେବ ହାତ ଧରି
ଅତିକ୍ରମ କରିବାକୁ ଦୁର୍ଗମ ପଥ
ଲଙ୍ଘିବାକୁ ମହା ଅଥଳ ସାଗର
ଚଢ଼ିବାକୁ ପର୍ବତ ଶିଖର
ପହଞ୍ଚିବାକୁ ଜୀବନର ଲକ୍ଷ୍ୟସ୍ଥଳ..... !!



# ମାନବୀରୁ ଈଶ୍ୱରୀ

ତୁମେ ଯେଉଁଠି ରହିଲେ ବି
ସଦା ଅଛ ମୋ ଅନୁଭବରେ
ମୋ' ଅନ୍ତରାତ୍ମାରେ....
ଯୁଆଡେ ଚାହିଁଲେ ଖାଲି ତୁମେ ଦିଶିଯାଅ
ମୁଁ ତୁମକୁ କାହିଁ ଏତେ ଭଲପାଏ ଯେ
ତୁମେ ମୋତେ କ'ଣ ଦିଅକି ?
ଖାଲି ଦୁଃଖ ଯନ୍ତ୍ରଣା କଷ୍ଟ......
ବେଦନାସିକ୍ତ ଲୁହକୁ ଲହୁ କରି ପିଉଥାଏ
ସେଥିରେ ବି ଆନନ୍ଦ ପାଉଥାଏ
କାହିଁ କେଉଁ କାଳୁ ଆବେଗରେ ଚାହିଁ ରହିଛି
ଅହଲ୍ୟା ପରି ପଥରରୁ ଈଶ୍ୱରୀ ହେବାର
ପ୍ରୟାସରେ ରାତିଦିନ ସ୍ୱପ୍ନ ଦେଖୁଛି
ତୁମକୁ ପାଗଳୀ ପରି ଖୋଜି ଚାଲିଛି
ତୁମର ତ ଦେଖା ନାହିଁ କି ଦର୍ଶନ ନାହିଁ
ସେ ଦୁଃଖର ଲୁହକୁ
ପିଇବାକୁ ଆଉ ଇଛା ନାହିଁ
ମନ ଚାହୁଁଚି ସତ ସତିକା
ତୁମେ ମୋ ଆତ୍ମା ଭିତରୁ
ବାହାରି ଆସନ୍ତ କି ମୁଁ ସତରେ
ପାଲଟି ଯାଆନ୍ତି ମାନବୀରୁ ଈଶ୍ୱରୀ ॥



# ଶୂନ୍ୟତାର ପାଦଚିହ୍ନ

ସମୟ ଆଜି ବଦଳି ଯାଇଛି
ଅଦୃଶ୍ୟ ଶତ୍ରୁ ମାତିଛି
ଜୀବନ ସାଙ୍ଗରେ ଜୁଆ ଖେଳୁଛି
କରୁଛି ତାଣ୍ଡବ.....
ଦୋହଲାଇ ଦେଲାଣି ପୃଥିବୀର ମେରୁଦଣ୍ଡ
ଚାରିଆଡ଼େ ହା ହା କାର, ଆତଙ୍କ
ଭୟର ବାତାବରଣ.......
ଛାତି ଥରିଯାଉଛି ମଣିଷର
ଏ କୋଳାହଳମୟ ସୁନ୍ଦର ପୃଥିବୀ
ଆଜି ନୀରବ ନିଥର.......
ନାହିଁ ଶହ ଶହ ଗାଡ଼ି-ମଟର
ଶବ୍ଦର ଧୂଆଁ ଧାର
ନୀଳ ଆକାଶରେ ପୂର୍ବଭଳି ବାଜୁନି ଆଉ
ଘୁଁ ଘୁଁ ଶବ୍ଦର ଘୁଙ୍ଗୁର......
ବିସ୍ତୀର୍ଣ୍ଣ ପୃଥିବୀ ଆଜି ଶାନ୍ତ କୋମଳ...
କେଉଁଠି ଦିଶୁନି ଗହଳି ଚହଳି
ନାହିଁ ଲୋକାରଣ୍ୟ ଭାବର ଆଦାନ ପ୍ରଦାନ
ଜନ୍ମ ଦିନ, ବିବାହ ବ୍ରତ ଭୋଜି ଭାତର
ନାହିଁ ମହା ଆୟୋଜନ.....
ଭକ୍ତକୁ ବି ବାଟ ନାହିଁ
ଯିବାକୁ ଭଗବାନ୍‌ଙ୍କ ଦୁଆର
ମନ୍ଦିର ବେଢ଼ା ଖାଁ ଖାଁ ଶୁନଶାନ୍
ସବୁ ଦପ୍ତରର ଚଉକି ଆଜି ଶୂନ୍ୟ
ଜୀବନ ଜିଇଁବାର ସନ୍ଧିକ୍ଷଣରେ

ମାନବ ସମାଜ ଆଜି ସନ୍ଦିହାନ
ଆଗକୁ ପାଦ ପକାଇବାକୁ ରାହା
ଖୋଜୁଛି, ପାଉନାହିଁ ଥଳ-କୂଳ
ଦିଶୁଛି ଖାଲି ଝାପସା ଅନ୍ଧାର.....
ଆଶା ସ୍ୱପ୍ନ ସବୁ ମଉଳି ଯାଉଛି
ଝୁଣ୍ଟି ପଡୁଛି ବାର୍ ବାର୍...
ଦୁର୍ବଳ ହୋଇ ଯାଉଛି କର୍ମମୟ
ଧାଁ,ଧଉଡର ଅଣନିଃଶ୍ୱାସୀ ପଣ
ବିଶ୍ରାମରେ ମଣିଷ ଛାଡୁଚି
ପ୍ରତିକ୍ଷଣେ ଦୀର୍ଘ ନିଃଶ୍ୱାସ.....
ଚାରିଆଡ଼େ ଖାଲି
ଶୂନ୍ୟତାର ପାଦ ଚିହ୍ନ.....
ପ୍ରକୃତି ଆଜି ନିରବି ଯାଇଛି
ବୋଧହୁଏ ନୂଆ କିଛି କରିବାର
ପ୍ରତ୍ୟାଶାରେ ନିୟତି ଖୋଜୁଛି
ନୂତନ ବିକଳ୍ପ .....!

# କଳଙ୍କର କାରାଗାର

ହେ' ଶୂନ୍ୟବାସୀ ଈଶ୍ୱର ତୁମେ
କାହିଁକି ବସିଛ ନିରବ
ଦେଖଥରେ ତୁମ ନୟନ ଫିଟାଇ
ସମାଜ ଅନୀତି ବଦଳି ଯିବ।

ବାଟ ଚାଲୁ ଚାଲୁ ନାରୀଟିଏ ଆଜି
ନୁହେଁ କେବେ ସୁରକ୍ଷିତ
ଭୟ ଆଶଙ୍କାରେ ଜଳି ମରୁଥାଏ
ଦିବାନିଶି ଆତଯାତ ।

ପୁରୁଷଟି କାହିଁ ପଶୁ ପାଲଟେ
ଭୁଲି ହିତାହିତ ଜ୍ଞାନ
ବୁଝିପାରେନି ସେ ମାତୃରୂପୀ
ନାରୀକୁ କାହିଁ କରେ ଅସମ୍ମାନ ।

ଲୋଲୁପ ଦୃଷ୍ଟି ତା'ଏତେ ମାରାତ୍ମକ
ଭୁଲିଯାଏ ମା' ଭଉଣୀ
ସେମାନଙ୍କ ରକ୍ତ ଶୋଷିବାକୁ
ତଡପେ କାହିଁ କେଜାଣି ?

ନିଜ ଶରୀର ତାତିକୁ ଲିଭାଇବାକୁ
ମୁହୂର୍ତ୍ତକେ ହୁଏ ବଶ
ରାସ୍ତାରୁ ଟାଣି ମା' ଭଉଣୀଙ୍କୁ
ଖିନଭିନ୍ କରି ମେଣ୍ଟାଏ ତା'ର ଶୋଷ।

ଆରେ ରାକ୍ଷସ ମାନବ
ଏତେ ନିର୍ଦ୍ଦୟ ହେଲ କିମ୍ପାଇଁ
ଇତିଶ୍ରୀ, ବେବିନା, କୁନ୍ଦୁଲି, ମମିତା, ଝରାଫୁଲ ଭଳି
କେତେ ଅବଳା, ମା'ଭଉଣୀଙ୍କ
ଇଜ୍ଜତରେ ଖେଳି ,
ଅମୂଲ୍ୟ ଜୀବନ ନେଲ ହରେଇ ।

ହେ' ନରରୂପୀ ରାକ୍ଷସମାନେ
ଶୁଣୁନିକି ତୁମକୁ ନାରୀ ଆତ୍ମାର
ଆକୁଳ ଚିତ୍କାର.. ?
ପୂଜ୍ୟ ପୂଜା ମା' ଭଉଣୀକୁ କରୁଚ
ଦୁର୍ଦ୍ଧର୍ଷିତ ଗଣ ବଳାତ୍କାର.. !
ପୁଣି ତଣ୍ଟି ଚିପି କରୁଛ ନିର୍ମମ ହତ୍ୟା ।

କାହାକୁ ମାରୁଛ, କାହାକୁ ଜୀଅନ୍ତା ଜାଳୁଛ
ସବୁରିମୂଳରେ ତୋ ଦେହଜ ଅଙ୍ଗ
ତାକୁ ଶେଷ କରି ପଙ୍ଗୁ କରିଦେଲେ
ବଦଳି ଯାଆନ୍ତା ତୋ ପାଷାଣ ଢଙ୍ଗ... !!

ଭାବିନିଅ ଥରେ
ତୁମ ନିଜ ମା' ଭଉଣୀଙ୍କୁ
ସେହି ଜାଗାରେ ରଖି
ପାରିବ କି ତାଙ୍କ ରକ୍ତ ଶୋଷି.. ?
କଳଙ୍କର କାରାଗାରେ.... !!

ଆରେ ନିର୍ଦ୍ଦୟ ପଶୁତ୍ୱ ମାନବ
ନାରୀକୁ ଖାଅନା ଝୁଣି ଝୁଣି
ସମୟ ସାଥିରେ ସୁଧୁରି ଯାଅ
ଶୁଣ ଏଥର ଧର୍ମ ବାଣୀ ।

ଭୟକର ସମାଜକୁ
ଭୟକର ଈଶ୍ୱରଙ୍କୁ
ଭୟଙ୍କର ତୁମ ଜନ୍ମଦାତା
ପିତାମାତାର ଇଜ୍ଜତକୁ
ଭୟକର ତୁମ ସ୍ତ୍ରୀ ପିଲାଙ୍କର
ଭବିଷ୍ୟତର ପରିଣାମକୁ
ଭୟକର ଆଇନ କାନୁନର
କାଠ ଗଡାକୁ.... ।।

ଭୟକର ଅନ୍ୟାୟ ବିରୁଦ୍ଧରେ
ତୁମ ଅମୁଲ୍ୟ ଜୀବନର ଜବରଦସ୍ତି
ସେ ମୃତ୍ୟୁ ଦଣ୍ଡର ଫାଶୀ ଖୁଣ୍ଟକୁ...
ନିନ୍ଦା ଅପମାନକୁ ସାଥିରେ ଧରି
ଚାଲିଯିବ କାଳ କାଳକୁ...

ଏବେ ବି ସମୟ ଅଛି, ସୁଧୁରିଯାଅ ହେ
ରାକ୍ଷସ ରୂପୀ ନରଗଣ
ସମାଜରେ ଜଣେ ଜଣେ ସୁମଣିଷ ଭାବରେ
ମଣିଷ ଭିତରେ ଥିବା
ଈଶ୍ୱରଙ୍କ ସତ୍ତାକୁ ଉପଲବ୍ଧି କର, ଅନୁଭବ କର
ମାନବ ପାଣିଆକୁ ଜାଗୃତ କର
ନହେଲେ ସଢୁଥିବ ଏମିତି କଳଙ୍କର କାରାଗାରେ ।।

# ବିଚାର ନିକିତି

ଅଜାଗା ଘା'ସେ ନିଜେ ଦେଖିପାରୁଛି
ନା କାହାକୁ ଦେଖାଇପାରୁଛି
ନା କାହାକୁ କହିପାରୁଛି
ନା ସହି ପାରୁଛି....
କେବଳ ଦଗ୍ଧୀଭୂତ ଯନ୍ତ୍ରଣାରେ
ଛଟପଟ ହୋଇ ମରି ମରି
ତାକୁ ଜିଇଁବାକୁ ହେଉଛି....
କାହା ଆଖିରେ ଆଙ୍ଗୁଠି ଗେଞ୍ଜି
କେହି ପାରିହୋଇ ଯାଏନା
କଲା କର୍ମର ଫଳ ଭୋଗିବାକୁ ହୁଏ
ଆଜି ନ ହେଲେ ବି କାଲି....
ଏହା ତା'ର ସତ ଲୁହ ନା ମିଛ ଲୁହ ?
ନିଜ ଅନ୍ତରାତ୍ମା ଜାଣୁଥିବ
ସତ କ'ଣ ମିଛ କ'ଣ...?
ପରମାତ୍ମା ଜାଣୁଥିବେ ଭୁଲ କିଏ ଠିକ୍ କିଏ ?
ମଣିଷ ଆଖିରେ ସିନା
ଅନ୍ଧ ପୁଟୁଳି ବାନ୍ଧି ଲୁଚକାଳି
ଖେଳାଯାଇ ପାରେ....
ହେଲେ ସେ ଅଦୃଶ୍ୟ ପଲକହୀନ
ଆଖିରୁ କ'ଣ କିଏ ଖସି ଯାଇପାରେ
ଏତେ ସହଜରେ....
ତାଙ୍କ ବିଚାରର ନିକତିରେ
ସେ ତଉଲି ନିଅନ୍ତି
ତାଙ୍କ ବିବେକର ମାପକାଠିରେ
ମାପି ନିଅନ୍ତି ଦୈର୍ଘ୍ୟ, ପ୍ରସ୍ଥ, ଉଚ୍ଚତା କେତେ ?
କାହା ଭାଗରେ କ'ଣ ପଡିବ...
ସମୟ ତା'ର ଉତ୍ତର ଦେବ.।।



# "ମୁଁ" କିଏ

ମୁଁ କିଏ !! ମୋତେ କେବେ ଚିହ୍ନିବାକୁ ଚେଷ୍ଟା କରିଛ
କେବେ ମୋତେ ଅନୁଭବ କରିଛ ହେ'ମାନବ ?

ନା..!.. ତୁମ ପାଶେ ସେ ଶକ୍ତି କାହିଁ
ମୋତେ ବୁଝିବାର......
ତୁମେ ତ କେବଳ ଜୀବନକୁ
ଉପଭୋଗ କରି ଶିଖିଛ.....
ଭୋକ ମେଣ୍ଟିଲା ପରେ ଭୋକ ପଛରେ ଦୌଡୁଛ...
ଦରକାର ଠାରୁ ଅଧିକ ଆଶା କରୁଛ.....

ତୁମେ ତ ମୋ କୁହୁକ ଜାଲରେ ବନ୍ଦୀ
ଉତ୍‌କ୍ଷିପ୍ତ ତୁମର ଲୋଭାଶକ୍ତ ମନ
ବନ୍ଧା ପଡ଼ିଛି ଏଥିରେ ତୁମର ଜୀବନ.....
ସେ ଜାଲ ଭିତରୁ ଟିକେ ହୁଗୁଳିବାକୁ
ଚେଷ୍ଟା କର.....ହେ ମାନବ.....!!

ଆଖି ବୁଜି ନୀରବରେ ଥରେ ପୃଥିବୀକୁ ଦେଖ
ତୁମ ଚର୍ତୁଃପାଶ୍ୱରେ କ'ଣ ଦେଖୁଚ ?
କେବଳ ନିରବତା, ଶୁନଶାନ୍, ଶାନ୍ତି....
ଆଖି ଖୋଲିଲେ କଣ ଦେଖୁଛ ?
କୋଳାହଳ, ଧାଁ, ଧଉଡ, କାମନା,ବାସନା
ଭୋଗ ବିଳାସର ଲାଳସା, ଈର୍ଷା, ଅହଂକାର
ଲଢେଇ, ଝଗଡ଼ା, ହଣାକଟା, ମରା

ଅମରତ୍ୱ ପ୍ରାପ୍ତି କରିବାର ଜିଜ୍ଞାସା...
ଆହୁରି ଅଧିକରୁ ଅଧିକ ପାଇବାର ବ୍ୟାକୁଳତା
ସୀମାହୀନ ଶୋଷରେ ସମସ୍ତେ ଆକ୍ରାମାକ୍ରା.....
ହେଲେ ଶୋଷ କ'ଣ ମେଣ୍ଟୁଛି..... ?

ଏବେ ମୋତେ ଜାଣି ପାରୁଛ ମୁଁ କିଏ ?
ତେବେ ଶୁଣ...ହେ ମାନବ....
ମୁଁ ତ ସେହି ମାୟା ମରୀଚିକା ତୃଷ୍ଣା
ମୋ ପଛରେ ଦୌଡି, ଦୌଡି ଥକିଯିବ
ଶେଷରେ ତୁମକୁ ଅପେକ୍ଷା ରହିଥିବ
ଆଶାତୀତ, ଆକାଂକ୍ଷିତ ଜୀବନର
ଚରମସତ୍ୟ ମୃତ୍ୟୁର ବିଭୀଷିକା... ।।।

# ସମୟର କୁଠାରଘାତ

ସମୟର କୁଠାରଘାତରେ
ମଣିଷ ଆଜି ଆକ୍ତାମାକ୍ତା
ଚଳ ଚଞ୍ଚଳ ପାଦରେ ତାର
ପଡି ଯାଇଛି ବେଡି....।।

ମୁକୁଳି ବାକୁ ଶକ୍ତି ନାହିଁ
ଦୌଡ଼ିବାକୁ ରାସ୍ତା ନାହିଁ
ସବୁ ପ୍ରଶସ୍ତ ରାସ୍ତାରେ ଆଜି
ପଡିଛି ତାଲା
ଦରଜା ନାହିଁ ଖୋଲା ।।

ଦୁଃସମୟର କରାଳରେ
ସମସ୍ତେ ଆଜି କବଳିତ
ମାନବ ସମାଜ ଆଜି
ଭୟରେ ଆତଙ୍କିତ ।।

ତଥାପି ସ୍ୱପ୍ନ ଦେଖା ସରିନାହିଁ
କେବେ ଫିଟିବ ତା ପାଦରୁ ବେଡି
ସୁ-ସମୟ ଆସିବ ଲେଉଟାଣି
ପୁଣି ଫେରିବ ସେ ଚଳଚଞ୍ଚଳ
କୋଳାହଳମୟ ଧାଁ ଧଉଡ଼ ପଣ ।।

କୋରାନାର କବଳରେ
ଦୁର୍ବଳ ହୋଇ ଭାଙ୍ଗି ପଡିଥିବା
ମଣିଷ ସମାଜ ପୁଣି
ଅଣ୍ଟା ସଳଖି ଠିଆ ହେବ

ସମୟକୁ ସଜାଡ଼ିବାକୁ
ମନରେ ସାହସ ବାନ୍ଧିବ
ପୁଣି ଡେଣା ଝାଡ଼ି ଉଡିବ
ଆକାଶର ବକ୍ଷ
ପହଞ୍ଚିବାକୁ ଜୀବନର ଲକ୍ଷ୍ୟ ।

ହେ' ଦିଗହରା ସମୟ
ତୁମେ ଫେରି ଯା, ତୁମେ ଫେରି ଯା
ତୁମର ଆଉ ଲୋଡ଼ା ନାହିଁ
ପୁଣି ଫେରାଇ ଦିଅ
ସେହି ସୁଖଦ ମୁହୂର୍ତ୍ତସବୁକୁ...
ହସିଉଠୁ ଏହି ସବୁଜ ସୁନ୍ଦର ଧରା
ହସିଉଠୁ ଜନ-ଜୀବନର ମଧୁମୟ ଧାରା ।



# ପ୍ରେମର ସଂଜ୍ଞା

ପ୍ରେମ ଈଶ୍ୱରୀୟ ହେଉ ବା ମାନବୀୟ
ସେଥିରେ କଳା କାଳିମାର ଦାଗ ନ ରହୁ
ପ୍ରେମ ହେଉ ଚିର ଶାଶ୍ୱତ ଚିର ଭାସ୍ୱର
ପ୍ରତି ହୃଦୟରେ ଝଙ୍କୃତ ହେଉ ପ୍ରେମ ସ୍ୱର୍ଗୀୟ ।

ପ୍ରେମର ନିବିଡ଼ ପଣରେ
ମଧୁର ସମ୍ପର୍କର ପରିଭାଷା....
ଆତ୍ମିକ ଚିନ୍ତାଚେତନାର
ଭାବନାରେ ଭରିଯାଉ
କେବଳ ଈଶ୍ୱରୀୟ ସତ୍ତା
ପ୍ରେମପରି ପବିତ୍ର ଶବ୍ଦ ଭିତରେ
ସମ୍ପର୍କ ସବୁ
ନ ହେଉ କଳୁଷିତ... ।।

ଆଜିକାଲି ଫୁଟପାଥରୁ
ପ୍ରେମ ସାଉଁଟିଲାପରି
ପ୍ରେମ ନ ହେଉ ଏପରି ଶସ୍ତା
ୟୁଜ୍ ଆଣ୍ଡ୍ ଥ୍ରୋ ପରି
ବ୍ୟବହାର କରି ଫିଙ୍ଗିଦେବା
ଆଜି ଯାକୁ ଛାଡି କାଲି ତାକୁ ଧରିବା ।।

ପ୍ରେମ ପରି ପବିତ୍ର ସମ୍ପର୍କ ଭିତରେ ନ ରହୁ
ରାଗ,ହିଂସା,କ୍ରୋଧ, ପ୍ରତିବାଦ
ପ୍ରତିବାଦର ପ୍ରତିବନ୍ଦଳରେ
ନ ଫୁଟୁ ଶକ୍ତ ବୋମା
ଚାଲି ନ ଯାଉ କାହାର ଅମୂଲ୍ୟ ଜୀବନ ।

ପରକୀୟା ପ୍ରେମରେ ଉବୁଟୁବୁ ହୋଇ
ଦମ୍ପତ୍ତିଭୂତ ନ ହେଉ
କାହାର ଘର ସଂସାର
ଉଜୁଡି ନ ଯାଉ କାହାର ପରିବାର ।

ପ୍ରେମ ଶବ୍ଦର ବ୍ୟାପକତା ଭିତରେ
କେବଳ ପ୍ରସ୍ଫୁଟିତ ହେଉ ଆନନ୍ଦର
ମହ ମହ ସୁଗନ୍ଧ, ମନହେଉ ସୁଗନ୍ଧିତ
ଆତ୍ମା ହେଉ ବିଭୋରିତ...
ସ୍ନେହ,ଶ୍ରଦ୍ଧା ଭଲପାଇବାର ରଜ୍ଜୁରେ
ଦୃଢ଼ ହେଉ ପବିତ୍ର ପ୍ରେମର ସଂପର୍କ ।

ପ୍ରତିକ୍ଷଣ ଜୀବନ ହେଉ ଅମୃତମୟ
ଆତ୍ମାରେ ଆତ୍ମାର ପବିତ୍ରତାର ବନ୍ଧନ
ନାରୀ ପୁରୁଷ ନିର୍ବିଶେଷରେ
ସାଙ୍ଗ ସାଥୀ, ବନ୍ଧୁବାନ୍ଧବ
ସମ୍ପର୍କୀୟ ସାନଠୁ ବଡ଼
ସମସ୍ତଙ୍କ ପ୍ରତି ସମସ୍ତଙ୍କ ହୃଦୟରେ
ଦୃଶ୍ୟମାନ ହେଉ
କେବଳ ଈଶ୍ୱରୀୟ ପ୍ରେମର ଅନୁଭବ ।
ସ୍ନେହ-ମମତା ସମ୍ପର୍କ ବନ୍ଧନରେ
ଚିକ୍ ଚିକ୍ କରୁଥାଉ, ପବିତ୍ର ପ୍ରେମର ପରିଭାଷା ।

ପ୍ରେମ ଶବ୍ଦ କେବଳ ମାନବ ଭିତରେ
ସୀମିତ ନୁହେଁ,
ଭୂମିରୁ ଭୂମା, ଆକାଶ ପାତାଳ
ଗଛଲତା ଜୀବଜନ୍ତୁ
ପ୍ରେମମୟ ଏ ପୃଥିବୀ
ସମସ୍ତଙ୍କୁ ପ୍ରେମ ଡୋରିରେ ବାନ୍ଧି ରଖିବା




ସମସ୍ତଙ୍କୁ ଭଲପାଇବା
ଆକର୍ଷଣର ଅନୁଭବକୁ ଜାବୁଡ଼ି ଧରିବା...
ତେବେ ଯାଇ ପ୍ରତି ସଜୀବ ନିର୍ଜୀବବସ୍ତୁ ଭିତରେ
ଈଶ୍ୱରଙ୍କୁ ଉପଲବ୍ଧି କରିବା ।

ତେଣୁ ପ୍ରେମ ଜାଗ୍ରତ ହେଉ
ପ୍ରତି ମଣିଷ ହୃଦୟରେ
ସ୍ୱର୍ଗୀୟ ଭାବନାରେ
ଐଶରୀୟ ଚିନ୍ତନରେ
ପ୍ରତିକ୍ଷଣେ ଆନନ୍ଦମୟ ହେଉ ଜୀବନ ।।



# ପ୍ରତିଧ୍ୱନିର ପ୍ରତିଶବ୍ଦ

ମୁଁ ନାରୀଟିଏ , ମୁଁ କନ୍ୟା ଟିଏ
ମୁଁ ପତ୍ନୀଟିଏ ମୁଁ ମାଆଟିଏ
ଅଯାଚିତ ସ୍ନେହପ୍ରେମ ଭଲପାଇବା
ଅଜାଡି ଦେଲି
ମୋ ତ୍ୟାଗର ପ୍ରତିଦାନରେ କ'ଣ ପାଇଲି ?
କେବଳ ମିଥ୍ୟା, କପଟ, ମାୟା, ଛଳନା
ପ୍ରତାରଣା, ଲାଞ୍ଛନା, ନିର୍ଯାତନା
ବିଶ୍ୱାସରେ ବିଶ୍ୱାସ ଘାତକତା,
ପ୍ରତି ମୁହୂର୍ତ୍ତରେ ମନରେ ପ୍ରଶ୍ନବାଚୀ
ଭୁଲଠିକ ତର୍ଜମାର ଗ୍ଲାନିରେ
କୋମଳ ହୃଦୟରେ ଜଳୁଛି ବହ୍ନି
ହୃଦୟର ସ୍ପନ୍ଦନ ବଢୁଛି କ୍ଷିପ୍ରରୁ କ୍ଷିପ୍ରତର
ପ୍ରତି ଲୋମକୂପରୁ ଭାସି ଆସୁଛି
ପରିହାସର ପ୍ରତିଧ୍ୱନି
ମୋ କର୍ଣ୍ଣପଟଳରେ ବାର୍‌ବାର୍ ଗୁଞ୍ଜରିତ ହେଉଛି
କେବଳ ପ୍ରତାରଣାର ଛଳନାମୟ ଅଟ୍ଟହାସ୍ୟର ସ୍ୱର ।।
ହାଃ ହାଃ ....ଦେଖ....
କେମିତି ମୁଁ ଠକିପାରେ !!!!!!
'ପ୍ରତିଶବ୍ଦ'
ହଁ ହଁ ଯେତେପାର ଠକିଦିଅ
ତୁମ ବିଦ୍ରୂପଭରା ତାଚ୍ଛଲ୍ୟମୟ ପରିହାସ
ଅପମାନଭରା ଶବ୍ଦର ପ୍ରତିଧ୍ୱନିରେ ମୁଁ ମର୍ମାହତ
ତଥାପି ବଞ୍ଚିଛି, ବଞ୍ଚିବି
ଶରୀରରେ ବିନ୍ଦୁଏ ରକ୍ତ ଥିବାଯାଏ
ଲଢେଇ କରିବି ।।

ପାଇଥିବା ଆଘାତରେ ଯନ୍ତ୍ରଣାର ଜ୍ୱାଳାରେ
ଚକ୍ଷୁରୁ ନିଗୁଡୁଥିବା ଲୋତକର ନଈରେ
ଶୁଖିଲା ପତ୍ରଟିଏ ହୋଇ ଭାସି ଯିବିନି
ବରଂ ନଈ ତୁଠର ପଥରହୋଇ
ହୃଦମନର ସବୁ ବ୍ୟଥା ବେଦନାକୁ
ପାଦରେ ଚାପି ଦାମ୍ଭିକତାର ସହ
ଆଗକୁ ବଞ୍ଚିବା ପାଇଁ ସଂଗ୍ରାମ କରିବି ।

ମୁଁ ନାରୀ,ନାରାୟଣୀ,ତ୍ୟାଗମୟୀ ଜନନୀ, ଶକ୍ତି ସ୍ୱରୂପିଣୀ ।।
ଶେଷରେ ଏତିକି କହିବି
ଅହଙ୍କାରୀ ମଣିଷ ସିନା ଅନ୍ୟକୁ
ଆଘାତଦେଇ ଠକି ଦେଇପାରେ
ହେଲେ ସେ ଅଦୃଶ୍ୟ ନିୟତିର ଚକ୍ଷୁର ପଲକ ପଡେନା
ସବୁ ଦେଖୁଥାଏ ସବୁ ଜାଣୁଥାଏ
ପ୍ରତିଦାନର ପ୍ରତିକ୍ଷାରେ.....

# ହୁସିଆର

ହୁସିଆର...ହୁସିଆର... ! !
ଆମର ଏ ବିରାଟ ପୃଥିବୀ
ରଙ୍ଗୀନ ଦୁନିଆ....
ଏ ରଙ୍ଗମୟ ସମାଜରେ ଚାଲିଛି
କେତେ ରଙ୍ଗୀନ କାରବାର....

କେତେ ପ୍ରକାର ଅଛନ୍ତି ମଣିଷ
ନାରୀ ଓ ପୁରୁଷ.....
ସମସ୍ତଙ୍କୁ ଚିହ୍ନିବା ବଡ଼ ମୁସ୍କିଲ...
କାହାକୁ ଭାବିବ ଏଠି ଆପଣାର
କିଏ ହେବ ତୁମ ନିଜର... ?
ଅନେକ ଏଠି ବିଶ୍ୱାସର ବାଲିଘର
ବିଶ୍ୱାସ ନାମକ ଶବ୍ଦଟି ଅନନ୍ତ ଆକାଶର... ! !

ଏହି ଭଦ୍ର ମଣିଷ ମାନଙ୍କର
ଭଦ୍ରମୁଖାର ମୁରୁକି ହସ ତଳେ
କେତେ ଯେ ଲୁଚି ରହିଛି ରଙ୍ଗ ରହସ୍ୟ
ବିଶ୍ୱାସର କୋଠରୀ ଭିତରେ
ଅମୃତ ବଦଳରେ ଭରିରହିଛି ବିଷର ଭଣ୍ଡାର.... ! !

ସତରେ କିଛି ସରଳ ନିରୀହ
କୋମଳ ହୃଦୟର ମଣିଷମାନେ
ଠିକ୍‌ରେ ବୁଝି ପାରନ୍ତିନି
ସେ ସମ୍ପର୍କ ଭିତରେ ଚାଲିଛି
କେତେ କୂଟନୀତି କେତେ ରାଜନୀତିର ଖେଳ.... ! !

କେତେ ଅଛି ମାୟା ଛଳନା କପଟର ଦ୍ୱାର
ଗୋଟେ ବିଶ୍ୱାସର କୋଠରୀ ଭିତରେ
ଆଉ ଗୋଟିଏ ଅବିଶ୍ୱାସର ଘର...
ସେ ଅବିଶ୍ୱାସ ଘର ଭିତରେ ରୁନ୍ଧି ହୋଇ
ଜୀବନ ହେଉଛି, ନାରଖାର,ଛାରଖାର...!!

ସତର୍କ ଘଣ୍ଟି ବାଜିଲାଣି
ବେଳ ହୁଁ ସାବଧାନ
ହୁସିଆର... ହୁସିଆର,...!!



# ନାରୀଟିଏ ଶକ୍ତିମୟୀ ସୃଷ୍ଟିଟିଏ

ନାରୀଟିଏ ଶକ୍ତିମୟୀ ସୃଷ୍ଟିଟିଏ
ଭିନ୍ନ ସ୍ୱରୂପା ଦେବୀଟିଏ
କନ୍ୟା, ଜାୟା, ଜନନୀ ଭଗିନୀର ସୂତ୍ରଟିଏ
ସମ୍ପର୍କର ଖୁଅଟିଏ....
କଳ କଳ ସ୍ରୋତ ଧାରା ନଈଟିଏ....
ଦଦରା ନାଆର କାତଟିଏ...
ଦୁଇ କୂଳର ସେତୁଟିଏ.....
ସଂସାର ବନ୍ଧନର ମାପ କାଠିଟିଏ
ପର୍ବତ ଶିଖରରୁ ଝରି ଆସୁଥିବା
ଝର ଝର ଝରଣାର ମୁକ୍ତା ବିନ୍ଦୁଟିଏ
ହସ କାନ୍ଦର ସମୋହିନୀ ଶକ୍ତିଟିଏ
ଗଙ୍ଗା ପରି ସ୍ୱଚ୍ଛ ପବିତ୍ର ମାତୃ ଦେବୀଟିଏ
ତ୍ୟାଗମୟୀ କଲ୍ୟାଣମୟୀ' ମାଆଟିଏ .।..
ସ୍ନେହମୟୀ ଭଗ୍ନୀଟିଏ, ପ୍ରେମମୟୀ ପତ୍ନୀଟିଏ
ଦରଦୀ ହୃଦୟର ବନ୍ଧୁଟିଏ.......।
ନାରୀଟିଏ... ସତେ କି ସର୍ବ ସହନ ଶକ୍ତିର ପ୍ରତୀକଟିଏ
ନିହାଣ ମୁନରେ ଖୋଦେଇ ପଥର ମୂର୍ତ୍ତିଟିଏ...
ନାରୀଟିଏ ମଲ୍ଲୀଫୁଲର ମହ ମହ ବାସଟିଏ
ଗୋଲାପର ସୁକୋମଳ ଶେଯଟିଏ...

ସର୍ବଂସହା ନାରୀଟିଏ, ଯେମିତି ଯନ୍ତ୍ରଣାର ନର୍କଟିଏ
କାଳିମାର ଛାଇରେ କଳଙ୍କର ବୋଝବହେ...
ନିର୍ଝରଣୀ ପରି ଲୋତକର ଲହୁପିଏ.....
ତହ ତ଼ହ ତତଲା ବାଲିରେ ସ୍ୱପ୍ନର ମଞ୍ଜିବୁଣେ...
ନାରୀଟିଏ ସହିବାର ଶକ୍ତିଟିଏ...
ଦୁଃଖ ସୁଖର ସାଥୀଟିଏ....ଗୃହର ଲକ୍ଷ୍ମୀଟିଏ

ଭଣ୍ଡାର ଘରର ଚାବିଟିଏ...
ଭବିଷ୍ୟତ ଆଶାର ସ୍ୱପ୍ନଟିଏ
ଦୀପର ଉଜ୍ଜ୍ୱଳ ଦୀପଶିଖାଟିଏ...
ଆକାଶର ଚାନ୍ଦସିଏ....ସରସୀର କଇଁଟିଏ....

ନାରୀଟିଏ ....ସମାଜର ପ୍ରବଞ୍ଚକ ପ୍ରତାରକମାନଙ୍କ ପାଇଁ
ମା'ଦୁର୍ଗା ରୂପୀ, ପ୍ରତିଶୋଧ ମୟୀ ତେଜସ୍ୱିନୀ
ଅଗ୍ନି ପିଣ୍ଡୁଳାଟିଏ .......।।
ନାରୀ ନାରାୟଣୀ ସର୍ବଂସହା ଧରିତ୍ରୀ ମା'ଟିଏ
ସ୍ୱୟଂସିଦ୍ଧା ନାରୀଟିଏ, ଶକ୍ତିମୟୀ ସୃଷ୍ଟିଟିଏ......।।।।

# ତୁ ଅନନ୍ୟା...

ତୁ କେବଳ କନ୍ୟାଟିଏ ନୁହେଁ, ଝିଅଟିଏ ନୁହେଁ
ତୁ ଦୁହିତା ଦୁଇକୂଳକୁ ହିତା
ତୁ ଅନନ୍ୟା.....
ତୋ ବିନା ସଂସାରର ସୃଷ୍ଟିକୁ
ଆଗକୁ ନେବାର କଳ୍ପନା କରିହୁଏନା
ତୋ' ଜନ୍ମ ଆଗମନରେ କାହାଘର ହସିଉଠେ
ମନ ପୂରିଯାଏ, ଖେଳିଯାଏ ଆନନ୍ଦର ଲହରୀ
ତୁ କାହା ଘରର ଲକ୍ଷ୍ମୀ-ସରସ୍ୱତୀ
ସୁକୁମାରୀ ରାଜକୁମାରୀ...
କାହା ଘରର ଅଲିଅଳି ଗେହ୍ଲାପରି.....

ପୁଣି କାହା ପାଇଁ ତୁ ଚିନ୍ତାର ଚୌହଦୀ
ଚାରିକାନ୍ଥ ଭିତରେ ରହିଯାଉ. ବନ୍ଦୀ
ଯୌତୁକ ନାମକ ରାକ୍ଷସ କବଳୁ ମୁକ୍ତି ପାଇଁ
ତୋ ଜନ୍ମରେ କାହା ମନରେ ଭରିଯାଏ
ଦୁଃଖର ଛାଇ....

ସତରେ ତୁ ଦୁଃଖ ନୁହେଁ
ସୁଖର ସଉାଟିଏ
ଭବିଷ୍ୟତର ଉଜ୍ଜ୍ୱଳ ଦୀପଶିଖା ଟିଏ..
ଏକଥା ଜାଣି ବି ଶିଖାହୋଇ ଜଳିବା ପୂର୍ବରୁ
ବେଳେ ବେଳେ ତୋତେ ପିଙ୍ଗି ଦିଆଯାଏ....
କେତେବେଳେ ଶିଖାଟିଏ ହୋଇ

ଜଳୁ ଜଳୁ ବି ଲିଭିଯାଉ...
ତଥାପି ତୋ ଉଜ୍ଜ୍ୱଳ ଆଲୋକରେ
ନିବିଡ ଅନ୍ଧାରକୁ ଦୂରକରୁ...
ଅନ୍ଧାର ଆଲୋକର ଲୁଚକାଳି
ଖେଳରେ ସଦା ଖେଳୁଥାଉ !!

ତୁ ଦୁହିତା ସାଜି ଜନ୍ମନେଉ
ଜାୟା ସାଜି ଜନନୀ ହେଉ
ସମୟ ଚକ୍ରରେ ବଦଳିଯାଏ ତୋ ସଞ୍ଜ୍ଞା
ପୁଣି କନ୍ୟା ରୂପୀ ଦୁହିତାକୁ ତୁ ଜନ୍ମ ଦେଉ
ଧରିତ୍ରୀ ପରି କେତେ ସହୁ ...!!!

ତୋ ବିନା ସଂସାର ଅଧୁରା
ତୁ' ସମାଜର ସ୍ରୋତସ୍ୱିନୀ ଧାରା
ତୁ' ଖାଲି ଝିଅ ନୁହେଁ, କନ୍ୟା ନୁହେଁ
ତୁ' ଦୁହିତା ଦୁଇ କୂଳକୁ ହିତା
ତୁ' ସତ୍ୟରେ ଶକ୍ତି, ଦ୍ୱାପରର ଦ୍ରୌପଦୀ
ତ୍ରେତୟାର ସୀତା
କଳିଯୁଗରେ ତୁ' ଅନନ୍ୟା, ଅପରାଜିତା....!!!

# 'ବୋଉ' ତୁ 'ଈଶ୍ୱରୀ'

'ବୋଉ'ଲୋ
ତୁ ସ୍ୱର୍ଗରେ ଅଛୁ କି ମର୍ତ୍ତ୍ୟରେ
ତାହା ମୁଁ ଜାଣେ ନାହିଁ
ତୁ ସିନା ମାନବୀ ରୂପରେ ଜନ୍ମ ନେଇଥିଲୁ
ତୁ ମାନବୀ ନ ଥିଲୁ, ଥିଲୁ ଦେବୀଟିଏ...

ଦେବୀ ଆଉ କିଏ କି... ?
ଦେବୀ ତ ଦୟାମୟୀ, କ୍ଷମାମୟୀ
କଲ୍ୟାଣମୟୀ, ସ୍ନେହମୟୀ
ଶକ୍ତି ସ୍ୱରୂପିଣୀ ମା'ଟିଏ....
ମା'ଲୋ ବୋଲି ଶ୍ରଦ୍ଧାରେ ଥରେ
ଉଚାରିଦେଲେ, ଯେମିତି
ସବୁଦୁଃଖ ଦୂରହୋଇଯାଏ....

ତୁ ସିନା ଆଜି ମୋ ପାଖରେ
ସ୍ୱଦେହରେ ନାହୁଁ
ଦେବୀ ମା'ପରି ଅଦୃଶ୍ୟରେ ରହି
ମୋତେ ପ୍ରତିମୁହୂର୍ତ୍ତରେ ଦେଖୁଛୁ
ମୁଁ ସିନା ତୋତେ ଦେଖି ପାରୁନି
କିନ୍ତୁ ପ୍ରତି ମୁହୂର୍ତ୍ତରେ ଅନୁଭବ କରୁଛି...
ସବୁକଥା ତୋର ସେମିତି ସଜୀବ ସ୍ମୃତି
ହୋଇ ମୋ ହୃଦ ସିନ୍ଦୁକରେ
ସାଇତା ହୋଇ ରହିଛି.....

ତୋ' ଲୁଗାକାନିର ମହମହ ବାସ ଭିତରେ
ସେ ଅଫିଟା ଗଣ୍ଠିର ରହସ୍ୟ କ'ଣ ?
ଯେବେ ପଚାରିଛି, ଉତ୍ତର କେବଳ
ତୋ ମୁରୁକି ହସ ଭିତରେ ପ୍ରଶ୍ନକୁ
ରୋକି ଦେଇଛି....
ଭେଦ କରିପାରିନି ଆଜିଯାଏ..
ସେମିତି ସେ ଅଫିଟାଗଣ୍ଠିଟି ରହିଥିଲା
ତୋ'ଜୀବନର ଶେଷ ଜୁଇ ଜଳିବା ଯାଏ....

ବୋଉ ଲୋ
ତୁ' ସିନା ଆଉ ମୋ ପାଖରେ ନାହୁଁ, କିନ୍ତୁ
ଏବେ ବି ତୋର ସେହି କଥା ପଦକର ସ୍ୱର
ସ୍ପନ୍ଦନ ସୃଷ୍ଟି କରୁଛି ମୋ' ହୃଦୟରେ
ଶିହରଣ ସୃଷ୍ଟି କରୁଛି
ମୋ' ପ୍ରତି ଲୋମକୂପରେ
ଗୁଞ୍ଜରିତ ହେଉଛି
ପ୍ରତିକ୍ଷଣେ ମୋ' କର୍ଣ୍ଣପଟ୍ଟଳରେ...
ଯାହାକୁ ନ କହିବେ ପାଞ୍ଚପ୍ରାଣୀ ଭଲ
ସେ ଜୀବନର କି'ବା ମୂଲ୍ୟ.... ?

ପିଲାଦିନୁ ବଡ଼ ହେବାଯାଏ
ତୋ ତାଗିଦର କେତେ ଯେ ମାଡ଼ଗାଳି
ଖାଇଛି, ସେ ସବୁ ଭୁଲି ଯାଇଛି
କିନ୍ତୁ ତୋର ସେହି ଗୋଟିଏ ପଦ କଥାକୁ
ଜୀବନର ବ୍ରତକରି ବାଟ ଚାଲିଛି
କେତେ ସଫଳ କି ବିଫଳ ତାହା ଜାଣେନାହିଁ..!!

ତଥାପି ଏତିକି ଜାଣିଛି
ତୋ ନାଁ କେବେ ତଳେ ପକାଇନି
କେହି କେବେ କହିନି
ତୋ'ମା' କ'ଣ ତୋତେ କିଛି ଶିଖାଇନି..?

ତୁ ଯେଉଁଠି ବି ତାହା 'ବୋଉ'
ତୁ ମାନବୀ ନୁହେଁ, ତୁ ଈଶ୍ୱରୀ
ତୋ ଆଶିଷର ହାତ ମୋ' ମଥା ଉପରେ
ଏମିତି ଉଜ୍ଜ୍ୱଳ ଦୀପଶିଖା ହୋଇ ଜଳୁଥାଉ
ଏବଂ ମୋର ପଥରପରି ସହିବା ଶକ୍ତିକୁ
ପ୍ରତିହତ କରୁଥାଉ....!!
ଜୀବନର ଏ କଠିନ ଅଙ୍କାବଙ୍କା
ଅନ୍ଧାର ରାସ୍ତାକୁ ପାରିହେବା ପାଇଁ
ଆଲୋକର ଆଶାର କିରଣଟିଏ
ଏମିତି ଝଟକୁଥାଉ..!!



# ବାପାଙ୍କର ଖୋର୍ଦ୍ଧା ନାଲି ଗାମୁଛା

ବାପାଙ୍କ ଖୋର୍ଦ୍ଧା ନାଲି ଗାମୁଛା
କାନ୍ଧରେ ନ ଥିଲେ
ବାପା ଆମ ବାପା ପରି ଦିଶନ୍ତିନି
ଏବେ ଆଉ ବାପାଙ୍କ କାନ୍ଧରେ
ସେ ନାଲି ଗାମୁଛା ଖୋଜି ପାଉନି
କାରଣ ବାପା ତ ଏବେ ଅନନ୍ତ ଆକାଶରେ
ତାରାଙ୍କ ମେଳରେ ତାରାଟିଏ....
ହାତ ବଢ଼ାଇଲେ ପାଉନାହିଁ...
କିନ୍ତୁ ବାପାଙ୍କର ସେ ନାଲି ଗାମୁଛାରେ
ଭରିଥିବା ସେ ଅଖଣ୍ଡିତ ସ୍ନେହର ପରଶ
ଏବେ ବି ସ୍ପନ୍ଦନ ସୃଷ୍ଟିକରେ ହୃଦୟରେ...
ମନେପଡେ ବାପାଙ୍କ ହାତର ସ୍ପର୍ଶରେ
ସେ ରଙ୍ଗଛଡା ନାଲି ଗାମୁଛା କେମିତି
ଶ୍ରଦ୍ଧା ବିଞ୍ଚୁଥାଏ ତାଳୁରୁ ତଳିପାଯାଏ
ଲହୁ, ଲୁହ ସ୍ୱେଦର ବାରିରେ ଭିଜିଯାଏ
ଆହାଃ ବୋଲି କହିଦିଏ
ସବୁ କଷ୍ଟ ଯନ୍ତ୍ରଣାକୁ ତୋଳିଧରେ
ନିଜ ଛାତିରେ....
ଏବେ ବି ବାପାଙ୍କ ନାଲି ଗାମୁଛା
ଝଟକୁଛି ମୋ'ଭାବନାରେ
ମୋ' ସ୍ୱପ୍ନରେ ମୋ' ଚିନ୍ତାରେ
ମୋ' ଚେତନାରେ....

ଏହି ସହରର ଗହଳି ଭିତରେ
ଖୋଜିବୁଲେ ମୋ' ବାପାଙ୍କୁ
ମୋ ବାପାଙ୍କ କାନ୍ଧରେ ଥିବା
ସେହି ରଙ୍ଗଛଡା ଖୋର୍ଦ୍ଧା ନାଲି ଗାମୁଛାକୁ...
ହେଲେ କେଉଁଠି ବି ଖୋଜି ପାଏନି
ମୋ' ବାପାଙ୍କ ପରି ବାପାଙ୍କୁ.....!!



# ନାରୀ ହନ୍ତା

ପାଚେରୀ ଭିତରେ ବିରାଟ ଅଟ୍ଟାଳିକା
ଫାଟକ ସାମ୍ନାରେ ଦରୁଆନ୍ ଜଗି ହୋଇଛି ଠିଆ
ବିନା ଅନୁମତିରେ ଭିତରକୁ ଯିବାର
କାହାରି ନାହିଁ ସ୍ୱାଧୀନତା....
ତା'ଭିତରେ ନାହିଁ କୋଳାହଳ ଶବ୍ଦର ଝଙ୍କାର
ସବୁ ନିର୍ବାକ ନୀରବ, ନିଶ୍ଚଳ.....
ଦୂରୁ ନିରେଖି କର୍ଣ୍ଣ ଡେରିଲେ
କେବଳ ଶୁଭି ଯାଉଛି ଅଟ୍ଟାଳିକାର
ପ୍ରାଚୂର୍ଯ୍ୟ ଭରା ଧନ ଦୌଲତର ଅଟ୍ଟାହସ୍ୟ ।।

ଚତୁର୍ଦ୍ଦିଗର ସଜୀବ ମୂକ ସବୁଜ ବର୍ଣ୍ଣାଳୀର
ଫିସ୍ ଫିସ ଗୁଞ୍ଜରଣ.....
ସତରେ କଣ ନ କଲା ଏ ନାରୀ ହନ୍ତା ?

ଏକ ଶୂନ୍ୟ କୋଠରୀ ଭିତରେ
କିପରି କାଟୁଛି ଏ ନିସଙ୍ଗ ଜୀବନ
ଚିନ୍ତାର ଚୌହଦୀ ଭିତରେ ସେ ଆତ୍ମା ମାତ୍ରା
ଧରା ପଡ଼ିଯିବାର ଭୟ ଯନ୍ତ୍ରଣାରେ ଛଟପଟ ।

ଅନ୍ଧାର ବୁକୁର ଆବଦ୍ଧ ବେଷ୍ଟନୀର ଏକ ନିବୁଜ
କାଷ୍ଠ ବାକ୍ସ ଭିତରୁ ପ୍ରତିଧ୍ୱନିତ୍ୱ ହେଉଛି
ଏକ ଅଶରିରୀ ନାରୀ ଆତ୍ମାର କରୁଣ ଚିତ୍କାର....
ଆରେ ନିଷ୍ଠୁର ନିର୍ଦ୍ଦୟ
ଏମିତି ଦୂର୍ଦ୍ଧର୍ଷ ଭାବେ ମୋତେ ମାରି
କାଟି ଖଣ୍ଡ ଖଣ୍ଡ କରିଦେଲ
ଭୁଲିଗଲ ସେ ଅଦୃଶ୍ୟ ଶକ୍ତିକୁ ?

ଭାବି ଥିଲ କି' ଆଇନର କାଠ ଗଡାରୁ
ତୁମେ ସହଜରେ ମୁକ୍ତି ପାଇ ଯିବ ?..
କିନ୍ତୁ ଏ କଣ ହେଲା.... ?
ତୁମ କୁକର୍ମ ତୁମକୁ ଭୋଗିବାକୁ ଆଜି ବାଧ୍ୟ କଲା
ଆଇନ୍ କାନୁନ୍‌ର ସେହି ଧର୍ମ ଜାଲରେ
ସାରା ଜୀବନ ପାଇଁ ତୁମେ ନଜର ବନ୍ଦୀ... ! ! ! !

# ପାହାଡ଼ି କନ୍ୟା

ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ
ବଣ, ପାହାଡ଼, ଝରଣା,ଜଙ୍ଗଲ
ଭାରି ମନୋରମ ସେ ଦୃଶ୍ୟର ଚିତ୍ରପଟ୍ଟ
କବିଟିଏ ହଜାଇଦିଏ, ତା ଭିତରେ ନିଜକୁ
କବିତାର ସନ୍ଧାନରେ ଆଙ୍କିବସେ
ହୃଦୟର ତୁଳୀରେ ଆତ୍ମା ମନରୁ ଉଦ୍‌ବେଳିତ
ହେଉଥିବା ଭାଷା ଓ ଭାବନାକୁ.... ।।

ସଜେଇଦିଏ କେତେ ରକମର ରଙ୍ଗରେ
ପରସ୍ତ ପରସ୍ତ ସାଇତିରଖେ
ମନ ଡାଇରୀରେ....
ଲେଉଟାଣି ଆସି ଚିତ୍ର ଆଙ୍କିଦେବ
ତା'ର ହୃଦୟର କାନଭାସରେ.... ।।

ହଠାତ ଏତିକିବେଳେ
ଝରଣାର କୁଳୁ କୁଳୁ ମଧୁର ଝଙ୍କାରରେ
ବିମୋହିତ ହୋଇ ଦୃଷ୍ଟି ନିକ୍ଷେପ କରୁ କରୁ
ଆଖି ଖୋସି ହୋଇପଡେ
ଝରଣାର ମୁକ୍ତାଝରା ଜଳରେ
ସ୍ନାନ କରୁଥିବା ଆଦିବାସୀ ଝିଅଟିର
ରୂପ ଲାବଣ୍ୟରେ.....
କବିଟିଏ ଚିତ୍ର ଆଙ୍କିଦିଏ, ତା'ଶବ୍ଦ ଚାତୁରୀରେ
ପାହାଡ଼ି କନ୍ୟା..... ।

# ପୂର୍ଣ୍ଣ ଇନ୍ଦୁ

ପୂର୍ଣ୍ଣିମାର ନିଶି
ନୀଳନଭରେ ପୂର୍ଣ୍ଣ ଇନ୍ଦୁମାସୀ
ଶାନ୍ତ, ସ୍ନିଗ୍ଧ ଶୀତଳ କିରଣ ବରଷି
ମନଭରି ହସୁଛି.....!!

ତା'ହସର ଔଜଲ୍ୟରେ
ସାରାଧରା ବିମୋହିତ
ଧରାବାସୀ ପୁଲକିତ
ଦିଗନ୍ତବ୍ୟାପୀ କୋଣ ଅନୁକୋଣ
ସ୍ଥିର ଜଳରାଶିରେ ପ୍ରତିବିମ୍ବିତ ହୋଇ
ସୃଷ୍ଟି କରୁଛି, ଦ୍ୱିତୀୟ ଜହ୍ନର ଭ୍ରମ....!!

ତା'ର ବିସ୍ତାରିତ ରଶ୍ମି ଆଢୁଆଳେ
ଅକାଶର ବୁକୁରେ ଲୁଚିଯାଉଛି
ଟିକି ଟିକି ତାରାଫୁଲ ....!!

କେତେ ମନୋରମ ଉଜ୍ଜ୍ୱଳ ଆଲୋକ
ବହଳ ଅନ୍ଧାରକୁ ଦେଇଛି ଲୁଚାଇ
ସେହି ଆଲୋକର ଶିଖା ଜାଳିବାକୁ
କାହାକୁ ଦେବାକୁ ମୂଲ୍ୟ ପଡୁନାହିଁ..!!
ସେହି ଜ୍ୟୋସ୍ନା ଭିଜା ଶୀତଳ
କିରଣର ସ୍ପର୍ଶରେ ସରସୀରେ
ମନଭରି ହସୁଛି କଇଁ.....!!

# ମୁଁ କବିଟିଏ...

ମୁଁ କବି ଟିଏ
ମୋ' ଉନ୍ମୁକ୍ତ ଚକ୍ଷୁରେ ଆଙ୍କିଚାଲେ
ଦୁନିଆର ରଙ୍ଗହୀନ, ରଙ୍ଗଭରା
କେତେ କେତେ ଛବି....
ଭିଜା, ଭିଜା ବ୍ୟାକୁଳ ମନରେ
ମୋର ପ୍ରାଣ ସଞ୍ଚରିତ ହୁଏ...

ରାତ୍ରୀ ଶେଷର ଗାଢ଼ପଣର
ଗଭୀର ନିରବତାରେ
ଲେଖନୀ ଧରି ବସେ....
ଆତ୍ମାର ନିବିଡତାରୁ
ଗୁଣୁଗୁଣୁ ଗୁଞ୍ଜରି ଆସେ
ବିକ୍ଷିପ୍ତ ଶବ୍ଦ ସବୁ.....
ବିଚ୍ଛୁରିତ ହୁଏ ଏଣେ ତେଣେ....
ମନର ଭାବପୂର୍ଣ୍ଣ ଆବେଗରେ
ସବୁକୁ ସାଉଁଟି ଆଣି ଗୁନ୍ଥିଦିଏ
ଏକ ସୁନ୍ଦର ଶବ୍ଦର ରତ୍ନମାଳାଟିଏ...
ଓଃ.. ଦୀର୍ଘ ନିଃଶ୍ୱାସଟିଏ ମାରେ....

ପାହାନ୍ତିଆ ରଜନୀ କୋଳରେ
ଘୁମେଇ ପଡୁ ପଡୁ
ସିନ୍ଦୁରା ଫଟାଇ ଉଇଁ ଆସେ ରବି
କୋମଳ ଦୀପ୍ତିମନ୍ତ କିରଣ ବିଛାଇ ଦିଏ
ଚର୍ତୁଃଦିଗରେ ଦୃଶ୍ୟମାନ ହୁଏ କବି.....!!!



# ମୋ ମନପସନ୍ଦର କବିତା

ବେଳେ ବେଳେ ନିଶାର୍ଦ୍ଧରେ
ଲେଖେ ମୁଁ କବିତା
କବିତା ଲେଖୁ ଲେଖୁ
ମନ ହୋଇଯାଏ ଭାରି ଅମାନିଆ
ବିଷୟ-ବସ୍ତୁର ଶବ୍ଦ ଖୋଜୁ ଖୋଜୁ
କେତେ ବେଳେ ରାତି ପାହିଯାଏ
ଜାଣିହୁଏନି ଜମା ।।

ତଥାପି ଲେଖିବାର ବ୍ୟାକୁଳତା
ଶବ୍ଦ ଖୋଜିବାର ନିଶା
କବିତାକୁ ପୂର୍ଣ୍ଣ ରୂପ ଦେବାର
ଆକୁଳତା, ବ୍ୟଗ୍ରତା
ଏମିତି ଘାରିଯାଏ ଯେ
ବିଲକୁଲ ଜଣା ପଡେନି ରାତି ଅନିଦ୍ରା..।।

ଏହି ନିସ୍ତବ୍ଧ ବେଳାରେ
ଶୁନଶାନ୍ ରାତିରେ
ମୋ ନିର୍ମଳ ମନ ହୃଦୟରୁ
ଆସୁଥିବା, ଭାବ-ଭାଷା ଶବ୍ଦ
ବାର୍ ବାର୍ ଗୁଞ୍ଜରିତ ହୁଏ
ମୋ କର୍ଣ୍ଣ ପଟ୍ଟଳରେ....।।

ଏହି ସବୁ ଶବ୍ଦ ସମାହାରରେ
ମୁଁ ପାଇଯାଏ ମୋ ମନ ପସନ୍ଦର କବିତା ।।

# ଶବ୍ଦର ଲଢ଼େଇ

ଝରଣାର ସ୍ରୋତପରି
ଶବ୍ଦର ପଙ୍କ୍ତି ସବୁ ଝରି ଆସନ୍ତି
ମୋ ମନ ହୃଦୟର ଗଭୀର କୋଣରୁ
କଲମ ତୁଳୀରେ ଆଙ୍କିଦିଏ
ସଜେଇ ଦିଏ, ଶବ୍ଦ ମାଳାରେ...

ସେହି ଶବ୍ଦ ସବୁ ପରସ୍ପର
ଲଢେଇ କରନ୍ତି
ହାରିବା ଜିତିବା ଭୟରେ
କେତେ କୁହା ଅକୁହାର
ଭାଷା ଜାଲରେ ଛନ୍ଦି ହୋଇ
ଖୋଲି ବସନ୍ତି ବୁଢ଼ୀ ଅସୁରୁଣୀର
କାହାଣୀ ପେଡି,ସିନ୍ଦୁକ ଭିତରେ ଥିବା
ଫରୁଆର ରହସ୍ୟ ବାଣୀ...
ତା'ଭିତରେ ଖଞ୍ଜି ହୋଇ ରହିଥାଏ
କେତେ ଗଳ୍ପ ଆଉ କାହାଣୀ ।

ପୁଣି ତା ସହିତ ଯୋଡି ହୋଇ ରହି ଥାଏ
ବର୍ତ୍ତମାନର ସ୍ଥିତି ପରିସ୍ଥିତି
ଅନୁଭବ ଅନୁଭୂତି
ସବୁକୁ ସାଉଁଟି ଗୁନ୍ଥି ଦେଲାପରେ
ମିଳିଯାଏ ମନ ଚାହୁଁଥିବା ସୁନ୍ଦର
କବିତା ମାଳାଟି...
ତଥାପି ହାରିବା ଜିତିବା ଭୟରେ
ମନ ହେଉଥାଏ ଘାଣ୍ଟି ...!!



# ଅବୁଝା କବିତା

ଯେଉଁ କବିତା କୁଆଡେ ବୁଝି ହୁଏନି
ଆମର କିଛି କବି, ସାହିତ୍ୟିକଙ୍କ
ମତରେ ତାହା ହିଁ ଶ୍ରେଷ୍ଠ କବିତା ।

ଏକଥା ମୁଁ କହୁନି, ଜଣେ ପାଠକ କହିଲେ....
ହଁ କବିତା ସିନା ଅବୁଝା ରହିଲେ
କବିଟିର ଜ୍ଞାନର ଗାରିମା ପ୍ରସ୍ଫୁଟିତ ହେବ
କବିର ବାର୍ତ୍ତା ସମାଜରେ ପହଞ୍ଚୁ ବା ନ ପହଞ୍ଚୁ
କବିଟିଏ କିନ୍ତୁ ପରିଚିତ ହୁଏ ଶ୍ରେଷ୍ଠ କବିରେ...

ସାଧାରଣ ପାଠକଟିଏ ବା
ସାଧାରଣ କବିଟିଏ
ଯେତେବେଳେ ବୁଝି ନ ପାରେ
ଭାବିନିଏ ଆହାଃ ସତରେ
କେଡେ ମହାନ୍ କବିଟିଏ
କେତେ ଜ୍ଞାନୀ ସତେ...
ଏ ଶବ୍ଦର ଗଭୀରତାକୁ
ଛୁଇଁ ହେଉନି କି, ମାପି ହେଉନି...
କବିର ମାୟା ରୂପକ ଭାଷାଜାଲରେ
ଛନ୍ଦି ହୋଇଯାଏ ପାଠକଟିଏ...
ଅନ୍ଧ ବାଡ଼ି ହଜାଇ ଦରାଣ୍ଡିଲା ପରି
ପାଠକଟିଏ ଦରାଣ୍ଡୁଥାଏ
କବିତାର ନିର୍ଯ୍ୟାସ ....!!

ହେଲେ ସେ କ'ଣ ପାଏ ?
ବେଳେବେଳେ ପାଠକ କବିଟିକୁ
ସେ କବିତାର ବା ଶବ୍ଦର ଅର୍ଥ ପଚାରିଲେ
କବିଟି ହଡ଼ବଡେଇ ଯାଏ
ଦେବାକୁ ତା'ର ଉତ୍ତର... !!

ହଁ କଥାରେ ଅଛି
ସାହିତ୍ୟ ସମାଜର ହିତ
କବିତା କ'ଣ ସମାଜର ହିତ ନୁହେଁ ?
ଭାଗବତ, ରାମାୟଣ, ମହାଭାରତ
ପୁରାଣ ଶାସ୍ତ୍ରର ଶବ୍ଦମାଳା କ'ଣ ଅବୁଝା ?
ତେବେ ଏମିତି କାହିଁକି କବିତାର ଧାଡ଼ି ?
ବୁଝି ହୁଏନି କି ବୁଝାଇ ହୁଏନି....

ଶବ୍ଦ ନ ବୁଝି ହେଲେ
ଭାଷକୋଷ ଅଛି
କିନ୍ତୁ ଭାବ ନ ବୁଝି ହେଲେ.. ?
କ'ଣ କବିଟିଏ ତା'ଜ୍ଞାନର ଗାରିମାରେ
ପାଠକଟିକୁ ଛନ୍ଦି ଦେବାକୁ ଚାହେଁ କି ?
କାହିଁକି.... ?

ଯଦି ଅଡୁଆ ସୂତାର ଖିଅ ନ ମିଳେ
ସେ ସୂତା କେଉଁ କାମରେ ଲାଗିବ ଯେ.... ??

# କାହିଁକି ଏତେ ରାଗୁଛ ଯେ

କାହିଁକି ଏତେ ରାଗୁଛ ଯେ..!!
ରାତ୍ରି ଅନିଦ୍ରା ହେଲେ କଣ ହେଲା କି..?
ମୋ ଆଖିକୁ ତ ନିଦ ନାହିଁ
ତୁମେ ଏତେ ବ୍ୟସ୍ତ କାହିଁ...?

ଟିକେ ବୁଝିବାକୁ ଚେଷ୍ଟାକର
ମୋ' ମନର ଆବେଗପଣ
ମୋ' ଚିନ୍ତା ଚେତନା ଭିତରେ
କିପରି ଜାଗ୍ରତ ମୋ କାବ୍ୟିକ ଭାବନାର
ଉଷ୍ମମୟ ପ୍ରବଣତା.....
ନିଦ କାହୁଁ ଆସିବ ଯେ....!!

କବିର ଭାବନାରେ ଯେତେବେଳେ
ଉତୁରି ଆସୁଛି କବିତା
ତାକୁ କୌଶଳରେ ଧରିବାକୁ
ନିଦର କାହୁଁ ବା ଲୋଡ଼ା...?

ରାତ୍ରିର ନିସ୍ତବ୍ଧତାରେ
ମୋ ଆତ୍ମାରେ ଶବ୍ଦମାନେ
କିପରି ଟକଟକ ଫୁଟୁଛନ୍ତି
ଟାଇଁ ଟାଇଁ ଶୁଭିଯାଉଛି ମୋ କର୍ଣ୍ଣରେ...

ମନ ଅଥୟ ହେଉଛି
କଲମ ଆସିଯାଉଛି
ଆପାଣାଛାଏଁ ମୋ ହାତକୁ
ସଫେଦ କାଗଜ ଉପରେ
ମୁଣ୍ଡି ମାରିବାକୁ ଶବ୍ଦର କୋଣାର୍କ....

ବାସ୍....କିଛି ସମୟ
କାଗଜର ସଫେଦ ଜମିରେ
କଲମମୁନରେ କସରତ୍.....

ରାତି ଅନିଦ୍ରା ଫରକ ପଡୁନି
ଫୁଟି ଦିଶୁଛି ଜଳଜଳ ଛଳଛଳ
ଶବ୍ଦର ଚାତୁରୀରେ ଭାବର ମିଳନରେ
କବିତାର ପରିଭାଷା ...!!!!

ଓଃ ....କି ଶାନ୍ତି..କି ତୃପ୍ତି.....
ତୁମେ କାହୁଁ ବୁଝିବ ଯେ.....!!!!



# ଶବ୍ଦମାନେ ବଡ଼ ମନୁଆ

ସତରେ, ଏ ଶବ୍ଦ ମାନେ ବଡ଼ ମନୁଆ
ମନ ହେଲେ ଫୁଲର ପାଖୁଡ଼ା ପରି
ଝରି ଆସନ୍ତି, ଝର,ଝର....
ବାସ ଚହଟେଇ, ମହକେଇ ଦିଅନ୍ତି ଚାରିଆଡ଼...
ସୁନ୍ଦର ପରିପାଟୀରେ
ଶବ୍ଦକୁ ସଜେଇ ଦିଏ, କବିଟିଏ....
କଳ୍ପନାରେ ବାସ୍ତବତାର ପୂର୍ଣ୍ଣ ରୂପକୁ
ପରିସମାପ୍ତିର ପୂର୍ଣ୍ଣଛେଦଟିଏ ଟାଣିଦେଇ
ଦୀର୍ଘ ନିଃଶ୍ୱାସଟିଏ ମାରେ....
ମନରେ ଭରିଯାଏ ତା'ର ଅସରନ୍ତି ପୁଲକ...
ପୁଣି ମନ ଆଉଟୁ ପାଉଟୁ ହୁଏ
କଲମ କାଗଜ ଧରି ବସେ
ନୂତନ ସୃଷ୍ଟିର ସନ୍ଧାନରେ....
କେତେବେଳେ ଝରଣାର ସ୍ରୋତ ପରି
ଶବ୍ଦମାନେ ବହି ଆସନ୍ତି କଳ କଳ
ମୁକ୍ତା ବିନ୍ଦୁ ପରି ଝଲସି ଉଠନ୍ତି
କରି ହୁଏନି, ତା' ମୂଲ୍ୟର ଆକଳନ ।
କେତେ ବେଳେ ଭସା ବାଦଲ ପରି
ଜୋର୍ ଜୋର୍ ଆଗକୁ ମାଡି ଚାଲନ୍ତି....
କେତେ ବେଳେ ଲୁଚ କାଳି ଖେଳ ପରି ବାଟ ଭାଙ୍ଗୁଥାନ୍ତି
କେତେବେଳେ ପୁଣି ଶୀତୁଆ ସଂଜରେ ତ
କେତେବେଳେ ମୃଦୁ ମଳୟରେ
ଆଖି ବୁଜି ସ୍ଥିର ଚିତ୍ତରେ ଶବ୍ଦମାନେ ଶୋଇ ଯାଆନ୍ତି..
ନା ତାକୁ ଜଗାଇ ହୁଏ
ନା ତା' ସାଥେ ଖେଳି ହୁଏ.....

ଶବ୍ଦମାନଙ୍କୁ ଜଗାଇବାକୁ ବାର୍ ବାର୍
ଚେଷ୍ଟା କରି, ଲେଖକ ବା କବିଟିଏ
ଭାବନାରୁ ଅନ୍ତର ହୁଏ
କଲମ କାଗଜ ରଖି ଦେଇ
ଅନ୍ୟ କାମରେ ମନ ଦିଏ.....
ପୁଣି ବେଳେବେଳେ ହଠାତ୍ ଶବ୍ଦ ମାନେ
ଚେଇଁ ଉଠନ୍ତି....... ତତ୍ପରତା ଦେଖନ୍ତି
କେତେବେଳେ,ଗାଧୁଆ ଘରେ ସାବୁନ୍ ଫେଣରେ ତ
କେବେ ରୋଷେଇ ଘର ତେଲ କଡାଇରେ
କେତେବେଳେ ଅର୍ଦ୍ଧ ରାତ୍ରରେ, ନିଦ୍ରାହୀନ ଅବସ୍ଥାରେ
କେତେବେଳେ ଶୁଭ ସକାଳର ଜଳଖିଆ ଥାଳିରେ
କେତେବେଳେ ଖରାବେଳେ ଫୁରସତ ସମୟରେ
କେତେବେଳେ ଦପ୍ତରର ଟେବୁଲ୍ ଉପରେ....
କେତେବେଳେ ମୁହଁ ସଞ୍ଜରେ... ସଞ୍ଜ ସଳିତାରେ.....
ପୁଣି କେତେବେଳେ ବାଟରେ ଘାଟରେ.....
କିଛି ନ ଥାଏ ତା'ର ସମୟର ଠିକଣା......
ସେତେବେଳେ ବର୍ଷା ବିନ୍ଦୁ ପରି
ଶବ୍ଦମାନେ ଟପ୍ ଟପ୍ ଝରି ପଡନ୍ତି.....
ଚିରସ୍ରୋତା ନଦୀ ପରି ଆଗକୁ ଆଗକୁ ମାଡି ଚାଲନ୍ତି
ଚକା ଭଉଁରୀ ଖେଳ ଖେଳି ଖେଳି
ଅଥଳ ସିନ୍ଧୁରେ ବିନ୍ଦୁଟିଏ ହୋଇ ଉଭା ହୁଅନ୍ତି....!!!

# ଦୋ' ଦୋ ଚିହ୍ନା

ଏହି ମୁହଁ ସଂଜରେ
ନିତି ଭେଟ ହୁଏ ତୁମ ସହ...
ଭାରି ଝାପ୍ସସା ଦିଶେ ତୁମ ମୁହଁ....
ଚିହ୍ନି ବି ଦୋ'ଦୋ ଚିହ୍ନା...
ତୁମେ କି' ଆଉ କିଏ
ନିରେଖି ଦେଖୁ ଦେଖୁ
ତୁମେ ଚାଲିଯାଅ ଅନେକ ଦୂର
ମୁହଁ ସଂଜରୁ ଧୀରେ,ଧୀରେ ହୁଏ
ଗାଢ଼ କିଟିମିଟି ଅନ୍ଧାର....
ତୁମକୁ ଦେଖିବାକୁ ଚାହିଁଲେ ବି
ଆଉ ଦେଖି ପାରେନା....

ସମୟ ଏମିତି ଗଡିଚାଲେ ସବୁଦିନ
ଏଇ ମୁହଁ ସଂଜରେ
ନିତି ଭେଟ ହୁଏ ତୁମ ସହ...

ମୁଁ ତୁମକୁ ଚିହ୍ନୁ ଥାଏ ଦୋ'ଦୋ ଚିହ୍ନା
ତୁମେ କିନ୍ତୁ ଚିହ୍ନିବା ଦୂରେ ଥାଉ
ବିଲକୁଲ ମୋତେ ଦେଖି ପାରନା...
କେବେ ବୋଧେ ଦେଖିବାକୁ ଇଛା କରିନା....

ମୋ ମନ କିନ୍ତୁ ଚାହୁଁଥାଏ
ମୁହାଁ ମୁହିଁ ଭେଟ ହୁଅନ୍ତା କି ଥରେ
ସେ ଜହ୍ନ ଆଲୁଅରେ
ଜ୍ୟୋସ୍ନାଭିଜା ମୁହଁ ସଂଜରେ
ତୁମେ ଦେଖି ପାରନ୍ତ ମୋତେ
ମୁଁ ଚିହ୍ନି ପାରନ୍ତି ତୁମକୁ.....!!!

# ଅପେକ୍ଷା

ଫୋନର ରିଙ୍ଗ୍ ବାଜି ଉଠିଲେ
ମୋ ଆଖିରେ ପ୍ରଥମେ
ତୁମ ଛବି ଦିଶେ
ସତରେ ଯଦି ତୁମେ ହୋଇଥାଅ
ଆନନ୍ଦର କିରଣ ଝଲକାଏ
ଝଲସି ଉଠେ.....

ମନରେ ଅଫୁରନ୍ତ ଖୁସି ଆସେ
ତୁମର ସେ ଅଙ୍କାବଙ୍କା ଗାମ୍ଭୀର୍ଯ୍ୟ ଭରା
କୋମଳ ଭାଷାର ରାଗିଣୀରେ
ମୋ ହୃଦ ସଦନ ହୁଏ
ଚାତକୀ ପରି ଅପେକ୍ଷାର ଅନ୍ତ ଘଟେ
ମନରେ ସାଗର ପରି
ଅସୁମାରୀ ଜୁଆର ଛୁଟେ....।।

କେତେ ଦୁଃଖ ସୁଖ ଭଲ ମନ୍ଦ
ତୁମ ଆଗରେ ବଖାଣି ବସେ
ଆତ୍ମତୃପ୍ତିରେ ବିଭୋର ହୋଇ
ଆଖିକୁ ମୋର ଭଲ ନିଦ ଆସେ
ଆଖିରେ ଝାପ୍ସା ନିଦ ଆସୁ ଆସୁ
ସ୍ୱପ୍ନରେ ପ୍ରଥମେ ତୁମ ଛବି ଦିଶେ ।।



# ତୁମକୁ ମୋ' ରାଣ

ଆଞ୍ଜୁଳା ଭର୍ତ୍ତି ଅସରନ୍ତି ସ୍ନେହ ପ୍ରେମ
ହୃଦୟରେ ତା'ର ବାସସ୍ଥାନ
ସାଗର ପରି ଗଭୀର ସେ ଅଦୃଶ୍ୟ ପ୍ରେମ
ଉତ୍ତାଳ ତରଙ୍ଗର ରାଶି ରାଶି
ଢେଉରେ ସମ୍ମୋହିତ ହେଉଥାଏ ମନ
ତାକୁ କ'ଣ ମାପି ହୁଏ ?
ସେତ ଅମାପ ....!!

କେବଳ ପବିତ୍ରମୟ, ଅମୃତମୟ ଆତ୍ମାର
ଐଶରୀୟ ସମ୍ମୋହନ
ସେହି ଅମୃତ ସାଗରରୁ ରସପାନ କରିବା ପାଇଁ
ପ୍ରତିକ୍ଷଣେ, ପ୍ରତି ମୁହୂର୍ତ୍ତରେ ଖୋଜୁଥାଏ
ଏବିଦଗ୍ଧ ବିଳାପିତ ମନ
ସେଥିରେ ପୁଣି ମୁଠା ମୁଠା ରାଗ ଅଭିମାନ
କେତେ ଦୁଃଖ କେତେ ଲୁହ....

ତୁମକୁ ମୋ ଭାବ ପଞ୍ଜୁରୀରେ ରଖି
ଶୁଆପରି ରାମ ନାମ ଜପିବାକୁ
ସଦା ଚାହୁଁଥାଏ ମୋର ମନ....
କିନ୍ତୁ କହିପାରେ ନାହିଁ, ସହିପାରେ ନାହିଁ
ଭୁଲିପାରେ ନାହିଁ, ରହିପାରେ ନାହିଁ
ଖାଲି ଯନ୍ତ୍ରଣାରେ ଦଗ୍ଧୀଭୁତ ହେଉଥାଏ
ଘଣ୍ଟା ଘଣ୍ଟାକୁ ଚାହିଁ ରାତିଦିନ...

ତଥାପି ଏ ମନ ଆକାଶରେ
ସଦା ଦିଶୁଥାଏ ପୂର୍ଣ୍ଣିମାର ସ୍ୱଚ୍ଛ ଜହ୍ନ
କଳାକାହ୍ନୁ ପରି କିଣିଥାଅ ମୋର ମନ
କ୍ଷୀର-ନୀର ପରି ଦୁଇ ଆତ୍ମାର ମିଳନ
ସ୍ୱର୍ଗୀୟ ଚିନ୍ତା ଚେତନାର
ଅପୂର୍ବ ଏ ସମ୍ପର୍କ ବନ୍ଧନ..

ଏହି ବନ୍ଧନର ଡୋରି ରହିଥାଉ ଚିରକାଳ
ଘଷି ମାଜି ଆହୁରି ଶକ୍ତ ହେଉ ପଛେ
କେବେ ଛିଡିବାକୁ ଦେବ ନାହିଁ
ଜୁଇରେ ଜଳିବା ଯାଏ ମୋର ପ୍ରାଣ
ତୁମକୁ ମୋର ଶତ କୋଟି ରାଣ ....!!

# ମୃତ୍ୟୁକୁ ପ୍ରଶ୍ନ

ସତରେ ମୃତ୍ୟୁ ତୁମେ ବଡ଼ ନିଷ୍ଠୁର
ତୁମ ଆସିବାକୁ ତ ମନାନାହିଁ
ତୁମେ ଆସିବ ହିଁ ତ' ଆସିବ
ଏହା ଚିରସତ୍ୟ, ବିଧିର ବିଧାନ
ହେଲେ; ମୃତ୍ୟୁ ତୁମେ କାହିଁକି ବା ଆସ ?

ଏମିତି ଅବେଳରେ,ଏମିତି ରୂପରେ,ଏପରି ଭାବରେ
କେତେବେଳେ ପ୍ରକୃତିର କାଳ କରାଳରେ ତ
କେତେବେଳେ ଅକସ୍ମାତ୍ ଦୁଃର୍ଘଟଣାର ଦୁର୍ଦ୍ଦିନରେ
କେତେବଳେ ମହା ବ୍ୟାଧିଗ୍ରସ୍ତ ଯନ୍ତ୍ରଣାରେ.....
କେତେବେଳେ ନର ପିଶାଚଙ୍କ
ପାଶବିକ ଅତ୍ୟାଚାରରେ
ପାଚିଲା କଞ୍ଚା କିଛି ଭାବନାହିଁ
ହଠାତ୍ ମନଇଛା ନେଇଯାଅ
ଆଉ କାହା ହାତରୁ କାହାକୁ ଛଡ଼ାଇ
ଲୋତକର ବନ୍ୟାରେ ଭସାଇ
ଦୁଃଖ ସାଗରରେ ବୁଡାଇଦେଇ
ଆନନ୍ଦର ଅମୃତପାନ କରିଚାଲିଯାଅ
ଖୁସିରେ.....!!

ଭାଗ୍ୟ ବିଡମ୍ବନାର ଦୋଷର ଦ୍ୱାହି ଦେଇ
ଆତ୍ମୀୟ ଖେଳୁଥାଏ ବିଧାତାର ଖେଳରେ.....
ଜୀବନ ଯନ୍ତ୍ରଣାର ଜୁଇରେ ଜଳି ଜଳି
ଜବରଦସ୍ତି ଦେଖୁଥାଏ ଜୀବନ ଜିଇଁବାର ସ୍ୱପ୍ନ
ଭବିଷ୍ୟତ ଜୀବନର ଅନ୍ଧାରୀ କାରାଗାରରେ
ବନ୍ଦୀରହି ତା' ଆଖିଭିଜା ସ୍ୱପ୍ନରେ
ବିଗତ ସ୍ମୃତିକୁ ରୋମନ୍ଥନ କରେ.....
କାନ୍ଧରେ କର୍ତ୍ତବ୍ୟର ଭାରକୁ ବହନକରି
ଜିଇଁଥାଏ ନିଜ ମୃତ୍ୟୁର ଅପେକ୍ଷାରେ....
ସତରେ ମୃତ୍ୟୁ ତୁମେ ବଡ଼ ନିଷ୍ଠୁର ନୁହେଁ କି.... ? ? ? ? ?

# ଫନି ଆସିଥିଲା...

ଦୁର୍ଦ୍ଧର୍ଷ ଫନି ଆସିଥିଲା
ବେଶ୍ ଆଗରୁ ସତର୍କ ଘଣ୍ଟି ବଜାଇ
ସେ ସତର୍କ ଘଣ୍ଟିର ଶବ୍ଦରେ
କେବଳ ଶୁଭି ଯାଉଥିଲା ହୁସିଆର..ହୁସିଆର....
ଆମ ଦୁନିଆର ସବୁଠୁ ବୁଦ୍ଧିମାନ
ଚାଲାକ୍ ମଣିଷମାନେ
ସତରେ ହୋଇଗଲେ ହୁସିଆର
ଦୋକାନ ବଜାରରେ ଧାଡ଼ି ବାନ୍ଧି
ଆବଶ୍ୟକତା ଠାରୁ କେତେ କ'ଣ ବୋହି ଆଣିଲେ
ଜମାକରି ରଖିଲେ ଘର କୋଣରେ..
କେହି କେହି ମଧ୍ୟ ଦୋକାନରୁ ଫେରିଲେ
ବିରସ ମୁହଁରେ ତାଙ୍କୁ ମିଳିଲା ନାହିଁ
ସାମାନ୍ୟ ଛୋଟ କ୍ୟାଣ୍ଡେଲଟିଏ.....।
ଚାରିଆଡ଼େ ଖେଳିଗଲା ଆତଙ୍କ, ହାହାକାର
ଫନି ଆସୁଛି ଫନି ଆସୁଛି
ସତେ ଯେମିତି କି ଫନି ଏଠି ମାସ ମାସ ଧରି
ଅଟକିଯିବ
ଭୋକିଲାଙ୍କ ଜଠରାଗ୍ନିରେ ଲାତ ମାରିବ....!!!

ପ୍ରକୃତିର ଏ କାଳ କରାଳ ତ' ଆସିବ
ବେଳେ ବେଳେ ସମୟ ଅସମୟରେ...
ତେଣୁ ଆସିଲା ମଧ୍ୟ ତା' ସୂଚନା ଅନୁସାରେ
ଯେତେ ହୁସିଆର୍ ହେଲେ କ'ଣ ହେବ ?
ତାକୁ କ'ଣ କିଏ ଅଟକାଇ ପାରିଲା ?
ସେ ଆସିଗଲା ଠିକ୍ ସମୟରେ
ଭୟଂକର ଉଗ୍ର ରୂପରେ, ନିରଙ୍କୁଶ ଭାବରେ....

ଥାରାଇଦେଲା ଧରଣୀ, ଥରାଇଦେଲା ମଣିଷର ଛାତି
ଥରାଇ ଦେଲା ଫୁଟପାଥ୍‌ର ଖୋଲା ଆକାଶ ତଳେ
ପଡିଥିବା ନିରୀହ ନରକଙ୍କାଳି ମାନଙ୍କର ଭଗ୍ନ ହୃଦୟ........
କେତେ ଆଶ୍ରୟଙ୍କ ମୁଣ୍ଡଉପରୁ ଉଡ଼ାଇନେଲା ଛାତ
କେତେ ଆତ୍ମୀୟଙ୍କ କୋଳରୁ ଛଡ଼ାଇ ନେଲା
ଆତ୍ମୀୟଙ୍କ ନିରୀହ ଜୀବନ ।

ଧ୍ୱସ୍ତ ବିଧ୍ୱସ୍ତ କରି ଚାଲିଗଲା ଏ ନିର୍ଦ୍ଦୟ ଫନି
ତାକୁ କବ୍ଜାକରି ପାରିଲେନି ଆମର କୌଣସି ବି
ଜ୍ଞାନୀ-ଗୁଣୀ..... ! ! !
ଓଃ କି ଭୟାନକ ! !
ପ୍ରକୃତିର କାଳ କରାଳର ଏ ବିଭୀଷିକା
କାୟାବିସ୍ତାର କରି ରଚାଇଦେଲା ମହା ତାଣ୍ଡବଲୀଳା
ସତରେ... କେତେ ବଳବାନ୍ ନଥିଲା ସିଏ ?

ବିଜ୍ଞାନ ଯୁଗରେ ମାନବ ସମାଜ ଆଜି ବେଶ୍ ଊର୍ଦ୍ଧ୍ୱରେ
ଆଧୁନିକ ଇଲୋକ୍‌ଟ୍ରୋନିକସ୍ ମିଡ଼ିଆ ଆଜି
ସର୍ବଦା ଚଳଚଞ୍ଚଳ ତଥାପି ବି କାଳ କରାଳ
ସମସ୍ତଙ୍କୁ କଲା ବଶୀଭୂତ
ପ୍ରକୃତିର ତାଣ୍ଡବକୁ କିଏ ବା କରିପାରିବ ପ୍ରତିହତ ?
ସମସ୍ତ ନିର୍ଘଣ୍ଟ କାର୍ଯ୍ୟସୂଚୀ ଓ କେତେ କାର୍ଯ୍ୟଧାରାକୁ
ଜବରଦସ୍ତି ଧରି ରଖିଲା ତା' ଶକ୍ତ ହାତ ମୁଠାରେ...
ନା ତାକୁ କିଏ କରିପାରିଲା ପ୍ରତିରୋଧ ?
ନା କିଏ କରିପାରିଲା ପ୍ରତିହତ ?

ଆମ ଚିରାଚରିତ ଆରାମ ଦାୟକ ଖୁସିର ଦୁନିଆରେ
ସମସ୍ତଙ୍କୁ ଅସ୍ତବ୍ୟସ୍ତ କରି
ଦୁଃଖର ଝଟ୍‌କାଟିଏ ଲେସିଦେଲା
ଦେଖାଇ ଦେଲା ତା'ର ପାରିଲା ପଣିଆ.....

ତା'ର କାୟା ବିସ୍ତାରକରି ତାଣ୍ଡବ ରଚି
ତା' ବାଟରେ ସେ ଚାଲିଗଲା
କାହାର କେତେ କ୍ଷତିହେଲା କି ଲାଭହେଲା
ତା'ର ହିସାବ କ'ଣ ସେ ରଖିଲା ?
ସେ କାହାଠାରୁ କେତେ ନେଇଗଲା
କାହାକୁ କେତେ ଦେଇଗଲା........!!! !!!

# ନାରୀଟିଏ

ନାରୀଟିଏ
ସ୍ନେହ, ପ୍ରେମ, ଦୟା, କ୍ଷମାର ନିର୍ଝରିଣୀ
ସେ ବାଣ୍ଟି ପାରେ
ପରସ୍ତ ପରସ୍ତ ସୁଗନ୍ଧିତ ଫୁଲ
ପାଖୁଡାର ବାରି
ଭାଷାରୁ ତା'ର ଝରାଇ ପାରେ ସେ
ସ୍ନେହ ପ୍ରେମର ମଧୁରରାଗିଣୀ ।

ତା'କୋମଳ ହୃଦୟରେ
ଯେତେବେଳେ ଲାଗିଯାଏ
ଗଭୀର ଆଘାତ
ସେ ଜଳାଇପାରେ ତା'ହୃଦୟରେ
ତେଜୋମୟ ବହ୍ନି ।

ଦୁଃଖ ,ଅପମାନ ଗ୍ଲାନିର ଜ୍ୱାଳାରେ
ଅଶ୍ରୁର ବର୍ଷା କରି
କରିପାରେ ବନ୍ୟାର ସୃଷ୍ଟି
ତା' ଭିତରେ ଥିବା
ଦୟା, କ୍ଷମା, ସ୍ନେହ, ପ୍ରେମସବୁ
ନଷ୍ଟ ହୋଇଯାଏ
ତା'ହୃଦୟରୁ ନିର୍ଗତ ହେଉଥିବା
ଅଗ୍ନିଶିଖାରେ ଜଳିପୋଡି
ଅଶ୍ରୁରବନ୍ୟା ଜଳରେ
ଲୀନ ହୋଇଯାଏ ସବୁକିଛି ....!!

# କବିଙ୍କର କବିତାର ରହସ୍ୟ

କବିଟିଏ ତା'ମାଧୁର୍ଯ୍ୟ ଚାତୁରୀରେ
ଭରିଦିଏ କବିତାରେ କେତେ ରକମର ରଙ୍ଗ
କେତେ ମଧୁର, କେତେ ସରଳ କେତେ ଗାମ୍ଭୀର୍ଯ୍ୟ
ଭାବରେ ତା'କବିତାକୁ କରେ ପରିସ୍ଫୁଟ ।

ବେଳେ ବେଳେ ସହଜ ସରଳ
ଭାଷାକରେ ପ୍ରୟୋଗ
ବୁଝିବାକୁ ଲାଗେ ଭାରି ସହଜ
ବେଳେ ବେଳେ କବିର ଗଭୀରତମ
ପ୍ରଦେଶରୁ ଆସୁଥିବା
ଭାଷାଶବ୍ଦ ଏତେ କଠିନ ଏତେ ବ୍ୟାପକ
ତା'ଭିତରେ ପଶିବାକୁ ସାଧାରଣ
ପାଠକଙ୍କ ପାଇଁ ହୋଇଯାଏ ଭାରି ଅସ୍ପଷ୍ଟ ।

ସେ ସେଥିରେ ପଶି ଭାଷାଶବ୍ଦର ଅର୍ଥ
ଖୋଜୁ ଖୋଜୁ ପାଠକ ଓଲଟାଇ ଦିଏ
ପୃଷ୍ଠାର ଦ୍ୱିତୀୟ ଭାଗ....

ମନେ ମନେ କହିଚାଲେ
ଏତ କବିତ୍ୱର ଭାଷା କିଛି ପଶୁନି ମୁଣ୍ଡରେ
କେବଳ କବି ହିଁ ବୁଝିବ
ସେହି କବିତ୍ୱ ଭାଷାର ମହତ୍ୱ
ଏହାକୁ ହିଁ କୁହନ୍ତି କବିଙ୍କର
କବିତାର ରହସ୍ୟ.....!!!



# ମନ ସ୍ୱପ୍ନର ଗନ୍ତାଘର

ମନ ଅସରନ୍ତି ସ୍ୱପ୍ନର ଗନ୍ତାଘର
ଅସମ୍ପୂର୍ଣ୍ଣ ଆଶାର କିରଣ
କେତେବେଳେ ନିମିଷକେ
କେଉଁଠି ଯାଏ ପହଞ୍ଚି
ନ ଥାଏ ତା'ର କିଛି ସ୍ଥିର
କେତେବେଳେ ଆକାଶରେ
କେତେବେଳେ ଜହ୍ନରେ
କେତେବେଳେ ତାରାରେ
କେତେବେଳେ ପାହାଡରେ
କେତେବେଳେ ପର୍ବତଶିଖରେ
କେତେବେଳେ ସମୁଦ୍ରତରଙ୍ଗରେ
କେତେବେଳେ ନଭଶ୍ଚୁମ୍ବୀ ଅଟ୍ଟାଳିକାରେ
କେତେବେଳେ ଗୋଲାପର
ସୁକୋମଳ ଶେଯରେ ॥
ଏମିତି ଘୁରିବୁଲୁଥାଏ ସଦା
ମନ ସ୍ୱପ୍ନ ରାଇଜରେ
କାହା ହୃଦୟରେ କେତେବେଳେ
ବସାବାନ୍ଧି ଗଢିତୋଳିବ ଘର ॥



# ଅମୃତର ଅନ୍ୱେଷଣ

ରାତିର ନିସ୍ତବ୍ଧତା
ଆଖିରେ ଆଖିଏ ସ୍ୱପ୍ନ
ମନରେ ଅସରନ୍ତି ଭାବନା
କ'ଣ କରିବାକୁ ହେବ.. ?

ଯନ୍ତ୍ରଣା ଜର୍ଜ୍ଜରିତ ମନ
ଆଖିର ନିଦକୁ ପ୍ରତିହତ କରୁଛି
ଚକ୍ଷୁ ପଲକ ପଡୁନି
ବାର୍ ବାର୍ ଚକ୍ଷୁ ସାମ୍ନାରେ ଉତୁରି ଆସୁଛି
ସେହି ଦିନ ଦ୍ୱିପ୍ରହରର ଘଟଣା ।।
ଓଃ ଖିନ୍‌ଭିନ କରୁଛି ମନକୁ
ଯନ୍ତ୍ରଣା ଜର୍ଜ୍ଜରିତ ମନ କାନଭାସରୁ
ଆଙ୍କି ଦେବାକୁ ସେହି ତୃଷାର୍ତ୍ତ
କ୍ଷୁଧାର୍ତ୍ତମାନଙ୍କ ଜୀବନ କାହାଣୀର ମନ୍ତ୍ର ।।

ମନରେ ଅନେକ ପ୍ରଶ୍ନ
ସତରେ ଏ ଲଙ୍ଗଳା ଫୁଙ୍ଗୁଳା
ନରକଙ୍କାଳ ଦେହଧାରୀ କୁନି କଳିକାମାନେ
କ'ଣ ଆମ ସମାଜର ଭବିଷ୍ୟତ.. ?
ସରକାରୀ କାଳିଆ ଯୋଜନା
ଦୁଇଟଙ୍କିଆ ଚାଉଳର କ'ଣ ଏମାନେ
ହକଦାର ନୁହଁ.. ?
ତାଙ୍କ ଭବିଷ୍ୟତର ସ୍ୱପ୍ନ କ'ଣ
କୁଢ଼ କୁଢ଼ ଅଇଁଠାଗଦାର
ଜରିମୁଣି ଭିତରେ.... ?

ପ୍ରଶ୍ନ ପରେ ପ୍ରଶ୍ନ ମନକୁ
ଇତସ୍ତତଃ କରୁଛି, ହୃଦୟ ଆନ୍ଦୋଳିତ ହେଉଛି
ବାର୍ ବାର୍ ଦୃଶ୍ୟମାନ ହେଉଛି
ସେ ଆଖି ସାମ୍ନାର ଘଟଣା
ସେହି କୁନି କୁନି ତୃଷାର୍ତ୍ତ, କ୍ଷୁଧାର୍ତ୍ତ
କଳିକାମାନଙ୍କ ଭିତରେ ଚାଲିଥିବା
ଲଢେଇ ଝଗଡା, ଟଣା ଓଟରା ॥

ସତେ କି ସେ ଅଇଁଠା ଜରିମୁଣି ଭିତରେ
ଭରି ରହିଛି, ବହୁ ମୂଲ୍ୟବାନ୍
ଅମୂଲ୍ୟ ରତ୍ନ
ସେହି ପଚା-ବାସି ଅଇଁଠା ଆଳିଆ ଗଦା ଭିତରୁ
ସେମାନେ ଯେମିତି କରୁଛନ୍ତି
ଅମୃତର ଅନ୍ୱେଷଣ....
ସେହି ଅଇଁଠା ଗଦା ଭିତରେ ପଡିଥିବା
ଟୁକୁଟା ରୁଟିଖଣ୍ଡ ଓ ଦରସିଝା ମାଂସ କଣ୍ଟା ଭିତରେ
ଯେମିତି ସଜୁଛି ତାଙ୍କ ସ୍ୱପ୍ନର ଜୀବନ ...!!
ଏହାର ଅନ୍ତ କେବେ..?

# ଚା' କପରେ ଶବ୍ଦର ଝଡ଼

ବେଳେ ବେଳେ
ସକାଳୁ, ସକାଳୁ ଚା' କପରୁ
ସୋଡକାଏ ଓଠକୁ ଦେଉ ଦେଉ
ତତଲା ଚା'ର ବାମ୍ଫ ଭିତରୁ
ଶବ୍ଦଗୁଡା ଝଡ଼ ପରି ଛିଟିକି ପଡନ୍ତି
ଅସ୍ତବ୍ୟସ୍ତ କରନ୍ତି, ମନ ବଗିଚାରେ... ।।

ଆଉ କି ସମ୍ଭାଳିହୁଏ
ସେ ଶାବ୍ଦିକ ଭାବନାକୁ
ରୋପଣ କରିଦିଏ
କଲମ ଅସ୍ତ୍ରରେ
ଖୋଲି-ତାଡି ଖାଲି ପଡିଥିବା
ସଫେଦ କାନ୍‌ଭାସ୍‌ରେ.... ।।

ଏମିତି ରୋପଣ କରୁ କରୁ
କେତେବେଳେ ଗରମ ଚା' ଥଣ୍ଡାହୋଇ
ବରଫ ପାଲଟିଯାଏ
ସେଥିପ୍ରତି ନିଘା ନ ଥାଏ ।।

ସେହି ଶବ୍ଦ ରାଜି ଭିତରୁ
ଶାଖା ପ୍ରଶାଖା ମେଲାଇ
ପ୍ରସ୍ଫୁଟିତ ହୁଏ
ରଙ୍ଗୀନ ଫୁଲ ସବୁ
ପାଖୁଡା ମେଲାଇ ବାସ ଚହଟାଏ
ସେହି ମହକିତ ବାସ୍ନାରେ

ମନ ହୁଏ ପୁଲକିତ
କୋମଳ ସକାଳଟି ହୋଇଉଠେ
ଅତୀବ ସୁନ୍ଦର
ମନେ ମନେ ଭାବୁଥାଏ,
ଆହାଃକି ଶବ୍ଦ ଓ ଭାବର ସମାହାର...!!



# ତୁମେ ମୋର ଆପଣାର

ତୁମେ ମୋର ବହୁତ ନିଜର
ବହୁତ ଆପଣାର
ତୁମେ ମତେ ବୁଝିନ
ମୁଁ ତୁମକୁ କେତେ ଚାହେଁ
ଦୁନିଆରେ କ'ଣ
ଆଉ କାହାର କିଛି ସତ୍ତା ନାହିଁ...
ନା ତୁମପରି ଆଉକେହି ନାହିଁ ?

ତୁମେ କାହିଁ ଆସ ଯେ
ବାର ବାର ମୋ ମନ ଭିତରକୁ...
ଖାଲି ମନ ଭିତରକୁ କ'ଣ ?
ତୁମେ ତ ମୋ ହୃଦୟରେ ରହିଛ
ମୋ ଆତ୍ମାରେ ରହିଛ
ତୁମ ବିନା ନା ଦିନ ସରେ
ନା ରାତି ବିତେ...
ରାତିଦିନ ଏକାକାର କରେ
ତୁମରି ଭାବନାରେ
ତୁମରି ଚିନ୍ତନରେ
ତୁମେ କିନ୍ତୁ ଏଯାଏ ବୁଝିନ
ମୁଁ ତୁମକୁ କେତେ ଭଲପାଏ ?
ସେଥିପାଇଁ ବୋଧେ ମୋ କଥା
ପଡ଼େନି ତୁମ କାନରେ...
ମୁଁ କିନ୍ତୁ ତୁମକୁ
ଏମିତି ଭଲ ପାଉଥିବି
ମୋ' ଶରୀର ଜଳିବାଯାଏ ଜୁଇରେ ॥



# ଆନନ୍ଦର ଆକର୍ଷଣ

ତୁମେ ହିଁ ତ' ମୋର ଖୁସି
ତୁମେ ହିଁ ତ' ମୋର ଶାନ୍ତି
ତୁମେ ହିଁ ମୋର ରାତି ଆଉ ଦିନ
ତୁମ ବିନା କ'ଣ ଏ ଜୀବନ.. ?
ଦିନ ଯାଇ ରାତିହୁଏ
ରାତି ଯାଇ ଦିନ ହୁଏ
ଜୀବନର କୁହୁଡ଼ିଆ ରାସ୍ତାରେ
ମୁହଁ ଦିଶେ ନାହିଁ
ବାର୍ ବାର୍ ଧକ୍କା ଖାଇ
ପଡିଉଠି ଆଗକୁ ଚାଲୁଥାଏ ।
କେବଳ ତୁମକୁ ହିଁ ଅନୁଭବୁଥାଏ
ଟିକିଏ ଆନନ୍ଦର ମୁହୁର୍ତ୍ତକୁ
ତୋଳି ଧରିବାକୁ
ମନମୋର ବ୍ୟାକୁଳିତ ହେଉଥାଏ ।
ବାସ୍ତବରେ ସ୍ୱପ୍ନରେ ପ୍ରତିକ୍ଷଣେ
ମନର ତୁଳୀରେ
ହୃଦୟରେ କେବଳ ତୁମରି
ଛବି ଆଙ୍କୁଥାଏ ।
ମୋ ଭିତରେ କେବଳ
ତୁମକୁ ଦେଖୁଥାଏ
ତୁମ ଭିତରେ କେବଳ
ସେହି ଈଶ୍ୱରୀୟ ସତ୍ତାକୁ
ଅନୁଭବ କରୁଥାଏ ।
ସେହି ଅନୁଭବର ପ୍ରାପ୍ତିରେ
ଆକର୍ଷଣର ଆନନ୍ଦ ଟିକକ
ସାଉଁଟୁଥାଏ ।

# ଶେଷ ଦୃଶ୍ୟ...

ହୃଦୟର କୋଠରୀ ଭିତରେ
ଜମାହୋଇ ପଡି ରହିଛି
ଅତୀତର କେତେକେତେ
କଳଙ୍କି ଲଗା
ଅବ୍ୟକ୍ତ ସ୍ମୃତି,ଅନୁଭୂତି,
ଦୁଃଖ, ଝଡ଼-ଝଞ୍ଜା
ଆବେଗ, ଅନୁରାଗ
ପ୍ରେମ, ପ୍ରୀତି
ଜୀବନର ଅଭୁଲା
ଗାଥା ଆଉ ବ୍ୟଥା....
ସବୁକୁ ଗଣ୍ଠିଲି କରି
ପ୍ରଯତ୍ନରେ ବାନ୍ଧି
ସାଇତି ରଖିଛି
ଜୀବନ ନାଟକର
ଶେଷ ଦୃଶ୍ୟର
ସେହି ଜଳନ୍ତା ଜୁଇରେ
ଜଳେଇବା ପାଇଁ....
ସେହିଦିନ ଜଳିଯିବ
ଯେଉଁ ଦିନ ଜଳିବ
ମୋ' ନିସ୍ତେଜ ଶରୀରର
ଅଲୋଡା ଜୁଇ .....!!!!



ଓଡ଼ିଆ ଭାଷା ସାହିତ୍ୟର ଜଣେ ଜଣାଶୁଣା ପ୍ରତିଷ୍ଠିତ ସାହିତ୍ୟିକା, ସମାଜସେବୀ, ସଙ୍ଗଠିକା, କୋଠଘର ଆମ ସହିତ୍ୟି ପରିବାରର ପ୍ରାଣପ୍ରତିଷ୍ଠାତା ତଥା ସମ୍ପାଦିକା ଅମ୍ବିକା ସ୍ୱାଇଁ, ବେଶ୍ ପରିଚିତ ନାଁ ଟିଏ। ସାହିତ୍ୟର ସବୁ ବିଭାଗରେ ଯଥା ଗଳ୍ପ, ପ୍ରବନ୍ଧ, କବିତା, ଭକ୍ତି କବିତା, ଶିଶୁ କବିତା ଲେଖିବାରେ ବେଶ ନିପୁଣା, ଓଡ଼ିଶାର ସବୁ ଖବରକାଗଜ ଓ ପତ୍ରପତ୍ରିକାରେ ତାଙ୍କର ଉଚ୍ଚକୋଟିର ଲେଖା ପାଇଁ ସେ ଅନେକ ପ୍ରଶଂସାର ଅଧିକାରିଣୀ। ସେ ଜଣେ ଶିଶୁ ସହିତ୍ୟିକା ଭାବରେ ମଧ୍ୟ ଖୁବ୍ ଜଣାଶୁଣା। ଖବରକାଗଜର ସ୍ତମ୍ଭ ପୃଷ୍ଠାରେ ତାଙ୍କର ପ୍ରକାଶିତ ଲେଖା ବେଶ ଚର୍ଚ୍ଚିତ। ସାହିତ୍ୟର ବିକାଶ ଦିଗରେ ସେ ସଂକଳ୍ପ ବଦ୍ଧ। ଆଗାମୀ ପିଢ଼ିର ସାହିତ୍ୟିକ, କବିମାନଙ୍କୁ ପ୍ରୋତ୍ସାହିତ କରି ଆଗକୁ ଆଣିବାରେ ସେ ବେଶ୍ ଯତ୍ନଶୀଳ। ତାଙ୍କ ସୃଜନର ସମ୍ଭାର ପଞ୍ଚମ କବିତା ପୁସ୍ତକ, 'ଅନୁଭବର ଆକର୍ଷଣ' ପାଠକଙ୍କ ହୃଦୟକୁ ନିଶ୍ଚିତ ଭାବରେ ଛୁଇଁବ ପ୍ରଶଂସା ସାଉଁଟିବ ଏହି ଆଶା ବିଶ୍ୱାସ ରହିଛି। ଏହି ପୁସ୍ତକଟି ପାଠକୀୟ ଆଦୃତି ଲାଭ କରୁ, ପ୍ରଭୁ ଜଗନ୍ନାଥ ପାଖରେ ଏହାହିଁ କାମନା।

ପ୍ରକାଶକ

















ଜ୍ଞାନ ପ୍ରକାଶ ପବ୍ଲିକେସନସ